ନେହେରୁ ବାଳ ପୁସ୍ତକାଳୟ

# ସ୍ୱର୍ଗ ଭ୍ରମଣ

## ଓ

## ଅନ୍ୟାନ୍ୟ କାହାଣୀ

ରଚନା : ଲୀଳାବତୀ ଭାଗବତ
ଅନୁବାଦ : ଯତୀନ୍ ଦାସ (ଆକାଶବାଣୀ)
ଛବି : ଯତୀନ୍ ଦାସ

nbt.india
ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ



ISBN 978-81-237-2379-2

ପ୍ରଥମ ସଂସ୍କରଣ 1970

ନବମ ମୁଦ୍ରଣ 2020 (ଶକାବ୍ଦ 1942)



Original : A Trip to Heaven and Other Stories (*English*)

Translation : Swarga Bhramana *(Odia)*

**₹ 40.00**

ନିର୍ଦ୍ଦେଶକ, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ନେହେରୁ ଭବନ, 5 , ଇନ୍‌ଷ୍ଟିଚ୍ୟୁସନାଲ ଏରିଆ, ଫେଜ୍ – II

ବସନ୍ତକୁଞ୍ଜ, ନୂଆ ଦିଲ୍ଲୀ – 110070 କର୍ତ୍ତୃକ ପ୍ରକାଶିତ

Website : www.nbtindia.gov.in

# ସ୍ୱର୍ଗ ଗମନ

ଶଙ୍କର ହେଲା ରଜାଙ୍କର ପ୍ରଧାନ ମାଳି । ରଜାଙ୍କ ବଗିଚା ମାଇଲ୍ ମାଇଲ୍ ବ୍ୟାପି ବିସ୍ତୃତ । ତହିଁ ଭିତରେ କେତେ ରଙ୍ଗର ଫୁଲ, ସବୁଜ ଘାସର ମଖମଲ, ଆଉ ବିରାଟ ବିରାଟ ଗଛ । ସକାଳଠୁଁ ସଞ୍ଜ ଯାଏ ଶଙ୍କରକୁ ବ୍ୟସ୍ତ ରହିବାକୁ ପଡୁଥିଲା । ଶୁଖିଲା ପତ୍ରମାନ ଝାଡୁଦେଇ ପରିଷ୍କାର କରିବା, ଫୁଲଗଛମାନଙ୍କରେ ପାଣିଦେବା, ଟିକି ଚାରାଗଛମାନ ବଢ଼ାଇବା, ଅନାବନା ଗଛଲତା ଉପାଡ଼ିବା, ମାଟି କୋଡ଼ିବା, ସାରଦେବା ଇତ୍ୟାଦି କାମ ତାକୁ କରିବାକୁ ପଡୁଥିଲା । ତା' କୁଡ଼ିଆଟି ଥିଲା ବଗିଚାର ଗୋଟିଏ କୋଣରେ । ତେଣୁ ବିଶ୍ରାମ କଲାବେଳେ ବି ସେ ବଗିଚା ଉପରେ ଆଖି ରଖି ପାରୁଥିଲା ।

ଦିନେ ରାତିରେ ଶଙ୍କରକୁ ନିଦ ହେଲା ନାହିଁ । ସେ ମଝି ରାତିଯାଏ ବିଛଣାରେ ପଡ଼ିରହି ଏକଡ ସେକଡ଼ ହେଉଥାଏ । ତାପରେ ଝରକା ପାଖକୁ ଯାଇ ସେ ବଗିଚା ଭିତରକୁ ଅନାଇଲା । ସେତେବେଳେ ସେ ଯାହା ଦେଖିଲା, ସେଥିରେ ସେ ନିଜ ଆଖିକୁ ବିଶ୍ୱାସ କରି ପାରିଲା ନାହିଁ । ସେ ବିଚାରିଲା ତା ନିଜ ଆଖି ଯୋଡ଼ିକ ନିଶ୍ଚୟ ତା ସହିତ ଖେଳ ଖେଳୁଛନ୍ତି । ସେ ପୁଣିଥରେ ଆଖିମଳି ଭଲ ଭାବରେ ବଗିଚା ଭିତରକୁ ଅନାଇଲା । ରୁପେଲି ଜହ୍ନଆଲୁଅରେ ସେ ଦେଖିଲା, ବଗିଚା ଭିତରେ ଗୋଟିଏ ଅତିକାୟ ହାତୀ ସବୁଜ ଘାସ ଉପରେ ଧୀରେ ଧୀରେ ବୁଲୁଛି ।

ଶଙ୍କର ତାଟକା ହୋଇଗଲା । କେଉଁଠୁ ଆସିଲା ଏ ହାତୀ ? ହାତୀଟିର ବର୍ଣ୍ଣ ଧଳା । ଶଙ୍କର କେବେହେଲେ ଧଳାହାତୀ ଦେଖି ନ ଥିଲା । ହଠାତ୍ ତାର ଗୋଟିଏ କଥା

ମନେ ପଡ଼ିଲା । ପିଲାଦିନେ ବୋଉଙ୍କଠାରୁ ଶୁଣିଥିବା ସ୍ୱର୍ଗର ଦେବଦେବୀଙ୍କ ସମ୍ପର୍କୀୟ କାହାଣୀ ସବୁ ତା'ର ମନେ ପଡ଼ିଲା । ସ୍ୱର୍ଗର ଦେବଦେବୀମାନଙ୍କ ରଜା ଇନ୍ଦ୍ର ଐରବତ ନାମକ ଗୋଟିଏ ହାତୀ ଚଢୁଥିଲେ । ସେହି ସୁନ୍ଦର ହାତୀଟିର ଦେହର ରଙ୍ଗ ବରଫ ଭଳି ଧଳା ।

"ଏଇଟି ନିଶ୍ଚୟ ଐରାବତ !" ଶଙ୍କର ଉତ୍ତେଜିତ ହୋଇ କହିଲା । "ସ୍ୱର୍ଗର ଭଲ ଭଲ ଖାଦ୍ୟଖାଇ ଅରୁଚି ଜନ୍ମିବାରୁ ସେ ଟିକିଏ ପରିବର୍ତ୍ତନ ପାଇଁ ମର୍ତ୍ତ୍ୟକୁ ଆସିଛି । ମୁଁ ଯଦି ତା'ର ଲାଞ୍ଜ ଧରି ଓହଳି ପଡ଼ିବି, ତେବେ ତା ସହିତ ସ୍ୱର୍ଗରେ ପହଞ୍ଚି ସେଠାକାର ବିସ୍ମୟକର ବସ୍ତୁମାନ ଦେଖି ପାରିବି " ସେ ଭବିଲା ।

ଶଙ୍କର ପାଦ ଚିପି ଚିପି ଏଭଳି ନିଃଶବ୍ଦରେ ଘରୁ ବାହାରିଗଲା ଯେ ତା' ସ୍ତ୍ରୀ କିଛି ଜାଣି ପାରିଲା ନାହିଁ ।

ଗୋଟିଏ ଗଛ ଆଡୁଆଳରେ ରହି ଶଙ୍କର ହାତୀଟିକୁ ଲକ୍ଷ୍ୟ କରିବାକୁ ଲାଗିଲା । ମନ ଇଚ୍ଛା ଘାସ ଖାଇସାରି ହାତୀଟି ଗଛ ଲତାର ନରମ ପତ୍ରମାନ ଖାଇଲା । ତା'ପରେ ଖାଇଲା ଅଧା ପାଚିଲା ଆମ୍ବ ଗୁଡ଼ାଏ । ଶଙ୍କର ଉଁ ଚୁଁ କଲାନାହିଁ । ସ୍ୱର୍ଗ ଦେଖିବା ପାଇଁ ତା' ମନ ଉଚ୍ଛନ୍ନ ହେଉଥାଏ । ତେଣୁ ହାତୀକୁ ସେ ହୁରୁଡ଼ାଇଲା ନାହିଁ ।

ଭୋର ହୋଇ ଆସିବାବେଳକୁ ବୋଧହୁଏ ହାତୀର ପେଟ ପୂରିଗଲା । ସେ ଶୁଣ୍ଢ ଉପରକୁ ଉଠେଇ ଆରାମରେ ହାକୁଟି ମାରିଲା । ଶଙ୍କର ବୁଝିପାରିଲା ଯେ ଏଥର ହାତୀ ମର୍ତ୍ତ୍ୟ ଛାଡ଼ିବ । ସେ ଦୌଡ଼ିଯାଇ ତା ଲାଞ୍ଜ ଧରି ଝୁଲିପଡ଼ିଲା । ଐରାବତ ଗୋଟିଏ ହେଲିକୋପ୍ଟର ଭଳି ଶୂନ୍ୟକୁ ଉଠିଗଲା । ସ୍ୱହୁଁ ସ୍ୱହୁଁ ସେ ମେଘମାଳାର ବହୁ ଉଚ୍ଚରେ ଉଡ଼ିବାକୁ ଲାଗିଲା । ଶଙ୍କର ତଳକୁ ଅନାଇ ଦେଖିଲା, କାହିଁ କେତେ ତଳେ ରାଜାଙ୍କ ବଗିଚା ଗୋଟାଏ ବିନ୍ଦୁଭଳି ଦେଖାଯାଉଛି । ଭୟରେ ଶଙ୍କରର ଚେହେରା ଶେତା ପଡ଼ିଗଲା । ତା ମୁହଁରେ ଦେଖାଦେଲା ବିନ୍ଦୁ ବିନ୍ଦୁ ଝାଳ । କିନ୍ତୁ ସ୍ୱର୍ଗରେ ପହଞ୍ଚିବାକୁ ସେମାନଙ୍କୁ ବିଶେଷ ବିଳମ୍ବ ହେଲାନାହିଁ ।

ଶଙ୍କର ଐରାବତର ଲାଞ୍ଜ ଛାଡ଼ିଦେଇ ସ୍ୱର୍ଗରେ ଛିଡ଼ା ହୋଇ ଗ୍ଚରି ଆଡ଼କୁ ଅନାଇବାକୁ ଲଗିଲ ।

ତା' ଆଖିରେ ବିସ୍ମୟ ଭରିଗଲ । "ଏହାହିଁ ବୋଧହୁଏ ସ୍ୱର୍ଗର ଉଦ୍ୟାନ—ନନ୍ଦନ କାନନ ।" ସେ ଆନନ୍ଦରେ ନିଜକୁ ନିଜେ କହିଲ – "ଏ ଗଛଗୁଡ଼ିକ କେଡ଼େ ବଡ଼ ବଡ଼ ହୋଇଛନ୍ତି ମ ! ଇନ୍ଦ୍ରଙ୍କ ମାଳି କି ପ୍ରକାର ସାର ବ୍ୟବହାର କରେ ?" ଶଙ୍କର ଏହିସବୁ କଥା ଭବି ଭବି ବୁଲି ବୁଲି ସବୁ ଦେଖିବାକୁ ଲଗିଲ । ମର୍ତ୍ତ୍ୟର ଗଛଠାରୁ ସ୍ୱର୍ଗର ଗଛଗୁଡ଼ିକ ଦଶଗୁଣ ବଡ଼ । ପତ୍ରଗୁଡ଼ିକ ବି ସେହିପରି ବଡ଼ । ଫଳଗୁଡ଼ିକ ଦଶଗୁଣ ଅଧିକ ସ୍ୱାଦୁ । ଫୁଲଗୁଡ଼ିକ ଦଶଗୁଣ ଅଧିକ ସୁନ୍ଦର ଓ ରଙ୍ଗୀନ । ସେହି ରସାଳ ମଧୁର ଫଳଗୁଡ଼ିକର ସ୍ୱାଦ ଗ୍ଚଖି ଗ୍ଚଖି, ସେହି ସୁନ୍ଦର ଫୁଲଗୁଡ଼ିକର ମହକ ଉପଭୋଗ କରୁ କରୁ, ଶଙ୍କରର ସାରାଦିନ ବିତିଗଲ ।

ସଞ୍ଜବେଳକୁ ତା'ର ମନେ ପଡ଼ିଲ ଯେ ତା ସ୍ତ୍ରୀ ଲକ୍ଷ୍ମୀ ନିଶ୍ଚେ ତା' ପାଇଁ ବ୍ୟସ୍ତ ହେଉଥିବ । ସ୍ୱର୍ଗ ରାଇଜର କିଛି ଗୋଟିଏ ଚିଜ ତା' ପାଇଁ ଉପହାର ହିସାବରେ ନେଇଯିବା ଉଚିତ ହେବ ବୋଲି ସେ ଚିନ୍ତା କଲ ।

ସେ ଗୋଟିଏ ଗୁଆ ସଂଗ୍ରହ କଲ । ସେ ଗୁଆଟି ଗୋଟିଏ ନଡ଼ିଆ ପରି ବଡ଼ । ତା'ପରେ ସେ ପାନପତ୍ରଟିଏ ତୋଳିଲ । ସେଇଟି ଗୋଟିଏ କଦଳୀ ପତ୍ର ଭଳି ବଡ଼ । ରାତିଅଧକୁ ଐରାବତ ପୁଣି ଶୁଣ୍ଢ ଟେକି ନାଦ କଲ । ଶଙ୍କର ବୁଝିପାରିଲ ଯେ ଏଥର ହାତୀ ମର୍ତ୍ତ୍ୟକୁ ଯିବ । ସେ ଦୌଡ଼ିଯାଇ ତା' ଲାଞ୍ଜଧରି ଓହଳି ପଡ଼ିଲ । କେଇ ମିନିଟ୍ ଭିତରେ ସେ ଆସି ରାଜାଙ୍କ ବଗିଚ୍ଚ ଭିତରେ ପହଞ୍ଚିଲ । ହାତୀ ଲାଞ୍ଜ ଛାଡ଼ି ଶଙ୍କର ତା' କୁଡ଼ିଆକୁ ଯାଇ ଦେଖିଲ ଯେ ତା' ସ୍ତ୍ରୀ ମନଦୁଃଖରେ ବସିଛି । ଶଙ୍କରକୁ ଦେଖି ତା'ମନ ଭଲ ହେଲ, କିନ୍ତୁ ସେ ରାଗିଯାଇ ପଗ୍ଚରିଲ, "କଥା କ'ଣ ? କୁଆଡ଼େ ପଳାଇଥିଲ ?"

ଶଙ୍କର ନରମ କଣ୍ଠରେ କହିଲ, "ରାଗ ନାହିଁ । ଦେଖ ତୁମପାଇଁ ମୁଁ କ'ଣ ଆଣିଛି ।" ଲକ୍ଷ୍ମୀ ସେ ଅଦ୍‌ଭୁତ ଗୁଆ ଓ ପାନ ଦେଖି ବଡ଼ ଆଶ୍ଚର୍ଯ୍ୟ ହୋଇ ପଗ୍ଚରିଲ, "ଏଭଳି ପାନ ଗୁଆ କେଉଁଠାରୁ ପାଇଲ ?'

ଶଙ୍କର କହିଲା, "କେଉଁଠାରୁ ଆଉ ପାଇବି ? ସ୍ୱର୍ଗରୁ ।" ଶଙ୍କର ସବୁ କଥା କହିଲା । ଲକ୍ଷ୍ମୀ ପ୍ରଥମେ ତାକୁ ବିଶ୍ୱାସ କରୁ ନ ଥିଲା । କିନ୍ତୁ ସେହି ବିଗଟ ପାନ ଓ ଗୁଆ ଦେଖି ବିଶ୍ୱାସ ନ କରି ଉପାୟ କ'ଣ ? ଶଙ୍କର ତାକୁ ସତର୍କ କରିଦେଲା, "ଏକଥା ଅତ୍ୟନ୍ତ ଗୋପନ ରଖିବ । ଏ ଗୁଆଟି ଶେଷ ହେବାକୁ ସାତଦିନ ଲାଗିବ । କିନ୍ତୁ କାହାକୁ କିଛି କଦାପି କହିବ ନାହିଁ ।"

ଲକ୍ଷ୍ମୀ କଥାଟି ଗୋପନ ରଖିବ ବୋଲି କହିଲା ସିନା କିନ୍ତୁ ରଖିପାରିଲା ନାହିଁ । ଗପିବାକୁ ସେ ଭାରି ସୁଖ ପାଉଥିଲା । ଆଉ ଥରେ ସ୍ୱର୍ଗକୁ ଯାଇ ଶଙ୍କର ଯେତେବେଳେ ଗୋଟିଏ ପ୍ରକାଣ୍ଡ ସୁସ୍ୱାଦୁ ଫଳ ଧରି ଫେରିଲା, ସେତେବେଳେ ସେ କଥା ପେଟରେ ରଖିବା ଲକ୍ଷ୍ମୀ ପକ୍ଷରେ ବଡ଼ କଷ୍ଟକର ହୋଇ ଉଠିଲା । ସାଙ୍ଗ ପଡ଼ୋଶୀମାନଙ୍କୁ ଦେଖିଲେ ତା'ଜିଭ ସଲ ସଲ ହେବାକୁ ଲାଗିଲା । ତଥାପି ସେ କୌଣସି ପ୍ରକାରେ ସବୁକଥା ଲୁଚେଇ ରଖିଥିଲା । କିନ୍ତୁ ଶଙ୍କର ତୃତୀୟଥର ପାଇଁ ସ୍ୱର୍ଗକୁ ଯାଇ ଯେଉଁଦିନ ଏକ ପ୍ରକାଣ୍ଡ ଫୁଲ ତୋଳିନେଇ ଆସିଲା ଓ ସେ ଫୁଲର ମହକରେ ସାରା କୁଡ଼ିଆ ଉଛୁଳି ଉଠିଲା, ସେଦିନ ଲକ୍ଷ୍ମୀ ନିଜକୁ ସଂଯତ କରି ରଖି ପାରିଲା ନାହିଁ । ତା'ଘରକୁ ବୁଲି ଆସିଥିବା ତା'ର ଜଣେ ସାଙ୍ଗ ପଚାରିଲା, "ତୁମେ କି ପ୍ରକାର ଅତର ଲଗାଇଛ କି ? ବାବାରେ ମହକ ! କେଉଁଠାରୁ ଏ ଅତର ପାଇଲ ?"

ଲକ୍ଷ୍ମୀ କହିଲା, "ମୁଁ କୌଣସି ଅତର ଲଗାଇ ନାହିଁ । ଆମ ଘର ଭିତରେ ଗୋଟିଏ ଅଦ୍ଭୁତ ଫୁଲ ଅଛି । ଏହା ସେହି ଫୁଲର ମହକ ।"

ସାଙ୍ଗ ଜଣକ ଫୁଲଟି ବିଷୟରେ ନାନା ପ୍ରଶ୍ନ କଲା । ଲକ୍ଷ୍ମୀ ସବୁକଥା କହି ପକାଇଲା । ଅବଶ୍ୟ ଏକଥା କାହାକୁ କହିବ ନାହିଁ ବୋଲି ସେ ପ୍ରତିଶ୍ରୁତି ଦେଲା ।

ସାଙ୍ଗ ଜଣକ ଯାଇ ତା'ର ସବୁଠୁଁ ଅନ୍ତରଙ୍ଗ ସାଙ୍ଗ ପାଖରେ ସେକଥା କହିଲା । ସେ ମଧ୍ୟ କାହାପାଖରେ ଏକଥା କହିବ ନାହିଁ ବୋଲି କଥା ଦେଲା । କ୍ରମେ ସହରର ସବୁ ସ୍ତ୍ରୀଲୋକ ଶଙ୍କରର ସ୍ୱର୍ଗଭ୍ରମଣ କଥା ଜାଣିଗଲେ । ସେମାନଙ୍କଠାରୁ ସେମାନଙ୍କ ସ୍ୱାମୀମାନେ ତଥା ପରିବାରର ଅନ୍ୟମାନେ ବି ଜାଣିଲେ ।

ଦିନେ ସକାଳେ ସହରର ସମସ୍ତ ବାସିନ୍ଦା ଆସି ଶଙ୍କରର କୁଡ଼ିଆ ଆଗରେ ଠୁଳ ହେଲେ । ଶଙ୍କର ଯେତେବେଳେ ପୁଣି ଥରେ ସ୍ୱର୍ଗକୁ ଯିବ, ସେତେବେଳେ ସେ ଯିମିତି ସେମାନଙ୍କୁ ସାଥିରେ ନେଇଯାଏ, ସମସ୍ତେ ଏଇ ଜିଦ୍ କଲେ ।

ଶଙ୍କର ତା' ସ୍ତ୍ରୀର ବୋକାମି ଯୋଗୁଁ ବହୁତ ବିରକ୍ତ ହେଲା । କିନ୍ତୁ ସେ ବା କ'ଣ କରନ୍ତା ? ସେ ଲୋକଙ୍କ ପ୍ରସ୍ତାବରେ ରାଜି ହେବାକୁ ବାଧ୍ୟ ହେଲା । ସେ କହିଲା, "ଠିକ୍ ଅଛି । ଆଜି ରାତିରେ ସଭିଏଁ ଆସି ରାଜାଙ୍କ ବଗିଚାରେ ଜମା ହେବ । କିନ୍ତୁ ସାବଧାନ ! କେହି ହଲଚଲ୍ ହେବନାହିଁ !"

ସେ ରାତିରେ ରାଜାଙ୍କ ବଗିଚାରେ ଏକ ଅପୂର୍ବ ଦୃଶ୍ୟ ଦେଖାଗଲା । ଗଛ ଅପେକ୍ଷା ମଣିଷ ଥିଲେ ସେଠାରେ ଅଧିକ । ଗଛମାନେ ତ ପବନରେ ଦୋହଲୁଥିଲେ । ମଣିଷମାନେ କିନ୍ତୁ ପାଷାଣ ପ୍ରତିମା ଭଳି ନିଶ୍ଚଳ ଭାବରେ ଛିଡ଼ାହୋଇ ରହିଥିଲେ । ଯେତେବେଳେ ଐରାବତ ଅବତରଣ କଲା, ସେତେବେଳେ ବି କେହି ଉଁ ଚୁଁ କଲେ ନାହିଁ ।

ଭୋର୍ ବେଳକୁ ହାତୀ ଯେମିତି ଆକାଶକୁ ଉଠିବାକୁ ଆରମ୍ଭ କରିଛି, ସିମିତି ଶଙ୍କର ସମସ୍ତଙ୍କୁ ଇଙ୍ଗିତରେ ଡାକି ନିଜେ ପ୍ରଥମେ ଯାଇ ହାତୀର ଲାଞ୍ଜ ଧରି ଓହଳି ପଡ଼ିଲା । ଲକ୍ଷ୍ମୀ ଯାଇ ଶଙ୍କରର ଗୋଡ଼ ଧରି ଝୁଲି ପଡ଼ିଲା । ତା'ର ସାଙ୍ଗ ତା' ଗୋଡ଼ ଧରି ଝୁଲିଲା । ସାଙ୍ଗଟିର ସ୍ୱାମୀ ତା' ଗୋଡ଼ ଧରି ଝୁଲିଲା । ଆଉ ଜଣେ ଲୋକ ତା' ଗୋଡ଼ ଧରି ଝୁଲି ପଡ଼ିଲା । ସେ ଲୋକର ସ୍ତ୍ରୀ ତା' ଗୋଡ଼ ଧରି ଝୁଲିଲା । ଏହିପରି ଭାବରେ ସମସ୍ତେ ଝୁଲିରହି ହାତୀ ସହିତ ଶୂନ୍ୟକୁ ଉଠିବାକୁ ଲାଗିଲେ ।

ସେମିତି ଝୁଲନ୍ତା ଅବସ୍ଥାରେ କିଛି ସମୟ ବିତିଗଲା । ଯେଉଁ ସ୍ତ୍ରୀଲୋକଟି ସବା ଶେଷରେ ଥିଲା, ସେ ଆଉ ତା'ର କୌତୂହଳ ସମ୍ଭାଳି ନ ପାରି ତା' ସ୍ୱାମୀଙ୍କୁ କହିଲା, "ଲକ୍ଷ୍ମୀ କହୁଥିଲା, ସ୍ୱର୍ଗର ଫୁଲ, ଫଳମାନ ଖୁବ୍ ବଡ଼ ବଡ଼ । କିନ୍ତୁ ଠିକ୍ କେତେ ବଡ଼, ତୁମେ ତୁମ ଉପରେ ଥିବା ଲୋକଙ୍କୁ ଟିକିଏ ପଚାରନ୍ତ ନାହିଁ ?"

ପ୍ରଶ୍ନଟି ଜଣ ଜଣଙ୍କ ମୁହଁରେ ତଳୁ ଉପରକୁ ଯାଇ ଶେଷରେ ଲକ୍ଷ୍ମୀ କାନରେ ପଡ଼ିଲା । ଲକ୍ଷ୍ମୀ ଶଙ୍କରକୁ କହିଲା, "ଶୁଣୁଛ ? ସ୍ୱର୍ଗର ଫୁଲ ଫଳମାନ କେତେବଡ଼ ସେମାନେ ପଚାରୁଛନ୍ତି ।"

"ଆମେ ସ୍ୱର୍ଗରେ ପହଞ୍ଚିଲେ ସମସ୍ତେ ଦେଖିବେ ନାହିଁ ?" ଶଙ୍କର କହିଲା ।

କିନ୍ତୁ ଲକ୍ଷ୍ମୀ ଗୋଡ଼କୁ ଧରି ଓହଳିଥିବା ସ୍ତ୍ରୀଲୋକଟି ଲକ୍ଷ୍ମୀକୁ ବାରମ୍ବାର ସେ ପ୍ରଶ୍ନଟି ପଚାରି-ବାକୁ ଲାଗିଲା । ଲକ୍ଷ୍ମୀ ତା' ସ୍ୱାମୀକୁ କହିଲା, "ମୋ ସାଙ୍ଗର ଆଉ ଧୈର୍ଯ୍ୟ ନାହିଁ । ସ୍ୱର୍ଗର ଫୁଲ ଫଳର ଆକାର ତୁମେ ଥରେ କହିଦେବ ଟି ।"

ଶଙ୍କର ବିରକ୍ତ ହୋଇ କହିଲା, "ସ୍ୱର୍ଗର ଫଳସବୁ ମର୍ତ୍ତ୍ୟର ଫଳ ଅପେକ୍ଷା ଦଶଗୁଣ ବଡ଼ । ତୁମେ ତ ଦେଖିଛ ସେ ଗୁଆଟା ଥିଲା ଏଡ଼େ ବଡ......"

ଶଙ୍କର ଗୁଆର ଆକାର ଦୁଇ ହାତରେ ଦେଖାଇ ଦେବାକୁ ଯାଇ ହାତୀର ଲାଞ୍ଜ ଛାଡ଼ିଦେଲା ଏବଂ......

ଶଙ୍କର, ତା' ପାଦ ଧରିଥିବା ଲକ୍ଷ୍ମୀ, ତା' ପାଦ ଧରିଥିବା ସ୍ତ୍ରୀଲୋକ, ତା' ପାଦ ଧରିଥିବା ତା' ସ୍ୱାମୀ, ତା' ପାଦ ଧରିଥିବା ତା'ର ବନ୍ଧୁ, ତା'ପରେ ତା'ର ସ୍ତ୍ରୀ—ଏହିପରି ଶେଷ ସ୍ତ୍ରୀଲୋକଟି ପର୍ଯ୍ୟନ୍ତ ସମସ୍ତେ ଶୂନ୍ୟରୁ ଖସି ପଡ଼ିଲେ ।

ପ୍ରଶ୍ନଟିର ପୁନରାବୃତ୍ତି କରିବା ପାଇଁ ଆଉ କେହି ଜୀବିତ ନ ଥିଲେ ।



# ରାଜାଙ୍କ ଦାନ

ଜଣେ ରାଜା ଥିଲେ–ଖୁବ ଉଦାର ଓ ଦୟାଳୁ । ସବୁ ପ୍ରଜାଏଁ କିପରି ସୁଖରେ, ମଙ୍ଗଳରେ ରହିବେ, କାହାରି କିଛି ଅସୁବିଧା, ଅଭିଯୋଗ ରହିବ ନାହିଁ, ଏହାହିଁ ଥିଲା ତାଙ୍କର ଚିନ୍ତା । ଲୋକଙ୍କ ଅବସ୍ଥା ନିଜେ ଦେଖିବା ପାଇଁ ସେ ଛଦ୍ମବେଶରେ ରାଜ୍ୟ ଭିତରେ ବୁଲୁଥିଲେ ।

ଦିନେ ଛଦ୍ମବେଶରେ ବୁଲୁଥିବା ବେଳେ ଏକ ଅଦ୍‌ଭୁତ ଦୃଶ୍ୟ ତାଙ୍କ ଆଖିରେ ପଡ଼ିଲା । ଚଷାଟିଏ ତା ବିଲରେ ହଳ କରୁଥିଲା । କିନ୍ତୁ ବଳଦ ପରିବର୍ତ୍ତେ ସେ ହଳ ଟାଣୁଥିଲା ଜଣେ ସ୍ତ୍ରୀଲୋକ । ରାଗରେ ରାଜାଙ୍କ ରକ୍ତ ତାତିଗଲା । ସେ ନିଜକୁ ସମ୍ଭାଳି ନ ପାରି ଲୋକଟି ଆଡ଼କୁ ଅନାଇ ପାଟିକଲେ :

"ତୁମେ ଏ କ'ଣ କରୁଛ ? ତୁମର କ'ଣ ବଳଦ ନାହାନ୍ତି ? ତୁମେ ଜଣେ ସ୍ତ୍ରୀଲୋକଙ୍କୁ ହଳ ଟଣାଉଛ ?"

"ସେ ମୋ ସ୍ତ୍ରୀ," ଲୋକଟି ଶାନ୍ତ ଭାବରେ ଉତ୍ତର ଦେଲା ।

ରାଜା ଆହୁରି ରାଗିଯାଇ କହିଲେ, "ତୁମେ ତୁମ ସ୍ତ୍ରୀଙ୍କୁ କ'ଣ ବୋଲି ପାଇଛ ? ସେ କ'ଣ ଗୋଟିଏ ଭାରବାହୀ ପଶୁ ?"

ଲୋକଟି କହିଲା, "ତୁମେ ବଡ଼ଲୋକମାନେ ସେଭଳି କହିବା ଖୁବ୍ ସହଜ । ତୁମମାନଙ୍କର ଗାଡ଼ି ଘୋଡ଼ା ରହିଛି । ଅଭାବ ମଣିଷକୁ କ'ଣ କରେ ତୁମେମାନେ ଜାଣନା । ମୁଁ ଗରୀବ ।

ଦାନା ମୁଠିଏ ପାଇଁ ମୋତେ ମୋ ବଳଦ ହଳକୁ ବିକ୍ରୀ କରିଦେବାକୁ ପଡ଼ିଛି । ତେଣୁ ମୋ ସ୍ତ୍ରୀ ବଳଦ କାମ ତୁଲଉଛି । ସେ ତ କୌଣସି ଅଭିଯୋଗ କରୁ ନାହିଁ ।"

ଲୋକଟିର ଏ ଉତ୍ତର ରଜାଙ୍କୁ ସନ୍ତୁଷ୍ଟ କରି ପାରିଲା ନାହିଁ । ସେ ଦୃଢ଼ କଣ୍ଠରେ କହିଲେ, "ନା, ଏ କଥା ମୁଁ ସହି ପାରିବି ନାହିଁ । ତୁମେ ଯେତେ ଯୁକ୍ତି ବାଢ଼ନା କାହିଁକି, ଜଣେ ସ୍ତ୍ରୀଲୋକଙ୍କୁ ନେଇ ହଳ ଟଣାଇବା ଅମାନୁଷିକ କାମ । ବଳଦଟାଏ କିଣିହେଲା ଭଳି ଯଥେଷ୍ଟ ଟଙ୍କା ମୁଁ ତୁମକୁ ଦେବି । କିନ୍ତୁ ତୁମେ ସଙ୍ଗେ ସଙ୍ଗେ ତୁମ ସ୍ତ୍ରୀଙ୍କୁ ହଳ ଟଣାରୁ ଖଲାସ କର ।"

ଏଥର ସେ ଲୋକଟି ରାଗିଯାଇ କହିଲା, "ମୋତେ ଏମିତି ହୁକୁମ୍ ଦେବାକୁ ତୁମେ କିଏ ହୋ ? ମୁଁ କିଆଁ ତୁମ ଟଙ୍କା ନେବି ? ମୁଁ ଭିକାରୀ ନୁହେଁ ।"

ରଜା ଏଥର କଣ୍ଠ ନରମ କରି କହିଲେ, "ତୁମେ ଆଗେ ମୋ ଭଉଣୀକୁ ହଳରୁ ମୁକୁଳାଅ ।"

ଲୋକଟି ଅଟ୍ଟାଳିଆ ଭାବରେ କହିଲା, "ଓ ! ଇଏ ତୁମ ଭଉଣୀ ପରା ! ତେବେ ତୁମ ଭଉଣୀ ଜାଗାରେ ତୁମେ ହଳ ଟାଣୁନା କାହିଁକି !"

ରଜା ସଙ୍ଗେ ସଙ୍ଗେ ରାଜି ହୋଇଗଲେ । ଲୋକଟି ନିରୁପାୟ ହୋଇ ତା' ସ୍ତ୍ରୀକୁ ହଳରୁ ମୁକୁଳାଇ ରଜାଙ୍କୁ ସେଥିରେ ଲଗାଇଲା । କିନ୍ତୁ ରଜା ଏଭଳି କାମ ଜୀବନରେ କରି ନ ଥିଲେ । ତେଣୁ ତାଙ୍କ ଅପାରଗତା ଯୋଗୁଁ ଅଧାଅଧି ବିଲରେ ହଳ ଭଲଭାବରେ ବୁଲି ପାରିଲା ନାହିଁ । ଯେତେବେଳେ ଫସଲ ହେଲା, ସେତେବେଳେ ଅଧେ ବିଲରେ ଭଲ ଫସଲ ହେଲା ନାହିଁ ।

ଚଷାଟି ତା ସ୍ତ୍ରୀକୁ କହିଲା, "ଦେଖିଲୁ, ତୋ ଭାଇର କାମ ? ସେ ବଳ ଖଟାଇ ହଳ କଲାନାହିଁ । ଫଳରେ ଚାଷ ଭଲ ହେଲା ନାହିଁ ।"

କିନ୍ତୁ ଯେତେବେଳେ ଅମଳ ହେଲା, ଦେଖାଗଲା ଯେଉଁ ଜମି ଅଧକରେ ରଜା ହଳ ଟାଣିଥିଲେ, ସେଥିରେ ଶସ୍ୟଦାନା ବଦଳରେ ମୁକ୍ତାଦାନା ଫଳିଛି ।



ଚଷାର ସ୍ତ୍ରୀ କହିଲା, "ଦେଖିଲ ? ମୋ ଭଇ କିମିତି ମୁକ୍ତା ଫଳାଇଛି !" ତା'ର ଆନନ୍ଦର ସୀମା ନ ଥିଲା ।

କିନ୍ତୁ ଚଷା ବଡ଼ ଗମ୍ଭୀର ହୋଇ କହିଲ, "ତୋ ଭଇ ଯାଦୁବିଦ୍ୟା ଜାଣେ । ଏ ମୁକ୍ତାଦାନ ଉପରେ ଆମର କେଉଁ ଅଧିକାର ? ଯିଏ ଏସବୁ ଉପୁଜାଇଛି, ଏସବୁ ତାହାର । ଏସବୁ ନେଇ ତା' ପାଖରେ ପହଞ୍ଚାଇ ଦେବାକୁ ପଡ଼ିବ ।"

ସ୍ତ୍ରୀ କହିଲ, "କିମିତି ? ତୁମେ ତ ସେ ଲୋକଙ୍କର ନାମ ମଧ୍ୟ ଜାଣିନାହଁ ।"

"ଯାହା ହେଲେ ବି ଆମେ ଏସବୁ ରଖିପାରିବା ନାହିଁ । ଏସବୁ ଆମର ନୁହେଁ । ମୁଁ ଏସବୁ ରାଜାଙ୍କ ପାଖକୁ ନେଇଯିବି ।" ଚଷାଟି କହିଲା ।

ମୁକ୍ତାତକ ବନ୍ଧାବନ୍ଧି କରି ଚଷା ଓ ତା' ସ୍ତ୍ରୀ ରାଜାଙ୍କ ନଅରରେ ଯାଇ ପହଞ୍ଚିଲେ । ରାଜା ସେତେବେଳେ ମନ୍ତ୍ରୀ ଓ ଅମାତ୍ୟମାନଙ୍କ ଗହଣରେ ଦରବାରରେ ବସିଥିଲେ । ଚଷା ଓ ତା' ସ୍ତ୍ରୀ ସିଧା ରାଜାଙ୍କ ଆଗକୁ ଯାଇ ଜୁହାର କଲେ । ତାପରେ ରାଜାଙ୍କ ମୁହଁକୁ ଅନାଇ "ଛାମୁ" ବୋଲି ସମ୍ବୋଧନ କରି ତା'ପରେ ସେମାନେ ଆଉ କିଛି କହି ପାରିଲେ ନାହିଁ । କାରଣ ସେମାନେ ଚିହ୍ନିପାରିଲେ ଯେ ଛାମୁ ସ୍ୱୟଂ ହେଲେ ସେଇ ହଳ ଟାଣିଥିବା ଲୋକ ।

ଚଷାଟିର ପାଟି ଖନି ବାଜିଗଲା । ସେ କୌଣସି ପ୍ରକାରେ କହିଲା, "ମୁଁ କଲି କ'ଣ ? ମୁଁ ରାଜାଙ୍କୁ ବଳଦ ବନାଇ ହଳ ଟଣାଇଲି ! ମୋତେ କ'ଣ ରାଜା କେବେ କ୍ଷମା କରିବେ ?"

ସେ ଆଣ୍ଠୁମାଡ଼ି ବସି କହିଲା, "ମଣିମା, ମୋତେ କ୍ଷମା କରନ୍ତୁ । ମୁଁ ବିରାଟ ଅପରାଧ କରିଛି ।"

ରାଜା ମଧ୍ୟ ସେତେବେଳକୁ ସେମାନଙ୍କୁ ଚିହ୍ନି ପକାଇଥିଲେ । ସେ ମୃଦୁ ମୃଦୁ ହସି କହିଲେ, "ତୁମର କ୍ଷମା ମାଗିବାର କ'ଣ ଅଛି ? ମୋ ଗରୀବ ପ୍ରଜାଙ୍କର ସମସ୍ୟା ଅନୁଭବ କରିବା ସକାଶେ ତୁମେ ମୋତେ ସୁଯୋଗ ଦେଇଛ । ମୁଁ ତୁମକୁ ସାହାଯ୍ୟ କରିପାରି ଆନନ୍ଦିତ ।"

ଲୋକଟି ମୁକ୍ତାତକ ରାଜାଙ୍କ ପାଦପାଖରେ ଥୋଇ କହିଲା, "ମଣିମା, ଜମିର ଯେଉଁ ଅଂଶରେ ଆପଣ ହଳ ଟାଣିଥିଲେ, ସେଇ ଅଂଶରେ ଏ ମୁକ୍ତା ଫଳିଛି । ଏସବୁ ଆମର ହୋଇ ପାରେନା । ଆପଣଙ୍କ ଶ୍ରମଦାନର ଫଳ ଆପଣ ଗ୍ରହଣ କରନ୍ତୁ ।"

ରାଜା କିନ୍ତୁ ସେସବୁ ଗ୍ରହଣ ନ କରି କହିଲେ, "ତୁମ ବିଲରେ ତୁମ କଠିନ ପରିଶ୍ରମର ପୁରସ୍କାର ସ୍ୱରୂପ ମୁକ୍ତା ଫଳିଛି । ସେସବୁ ତୁମର ।"

କିନ୍ତୁ ଲୋକଟି ତଥାପି ମୁକ୍ତାତକ ଫେରାଇ ନେବାକୁ ରାଜି ହେଲା ନାହିଁ । ସେ କହିଲା, "ଯେଉଁ ନିଷ୍ଠୁର ପ୍ରଣାଳୀରେ ମୁଁ ଜମି ଚାଷ କରୁଥିଲି, ସେଥିରେ ଏହା ଫଳି ନ ଥାନ୍ତା । ଏସବୁ କେବଳ ଆପଣଙ୍କ ମହାନୁଭବ ମମତା ଓ ଦରଦ ଯୋଗୁଁ ସମ୍ଭବ ହୋଇଛି ।"

ରାଜା ମୁକ୍ତା ଥଳିଟି ଉଠାଇନେଇ ଲୋକଟିର ସ୍ତ୍ରୀ ପାଖକୁ ଯାଇ କହିଲେ, "ମୁଁ ତୁମକୁ ମୋ ଭଉଣୀ ବୋଲି କହିଥିଲି । ଭଉଣୀପ୍ରତି ଭାଇର ଏ ଉପହାର ଗ୍ରହଣ କର ।"

ଏଥର ଲୋକଟି ଓ ତା'ର ସ୍ତ୍ରୀ ମୁକ୍ତାଥଳି ନେବାକୁ ଆପତ୍ତି କରି ପାରିଲେ ନାହିଁ ।



# ଦୂରଦ୍ରଷ୍ଟା ବଣିକ

ବହୁଦିନ ତଳେ ବାରଣସୀ ନଗରୀରେ ମୋହନ ଓ ସୋହନ ନାମରେ ଦୁଇଜଣ ବଣିକ ବାସ କରୁଥିଲେ । ମୋହନ ଥିଲା ଯେମିତି ବିଜ୍ଞ, ସେମିତି ବୁଦ୍ଧିମାନ । ସୁଯୋଗର ସଦ୍‌ବ୍ୟବହାର କିପରି କରିବାକୁ ହୁଏ, ସେ କଥା ସେ ଜାଣିଥିଲା । ତେଣୁ ସେ ପ୍ରଚୁର ସମ୍ପତ୍ତିର ଅଧିକାରୀ ହୋଇ ପାରିଥିଲା । ଅନ୍ୟ ପକ୍ଷରେ ସୋହନ ନିଜକୁ ଖୁବ୍ ବିଜ୍ଞ ବୋଲି କହୁଥିଲା ସିନା, ପ୍ରକୃତରେ ସେ ଥିଲା ବୋକା ।

ମୋହନ ଥରେ ବଣିଜ କରିବା ଉଦ୍ଦେଶ୍ୟରେ ଦୂରକୁ ଯିବାକୁ ବାହାରିଲା । ସେ ନାନା ପ୍ରକାର ପଣ୍ୟଦ୍ରବ୍ୟ ସଂଗ୍ରହ କରି ପାଞ୍ଚଶହ ବଳଦ ଗାଡ଼ିରେ ସେସବୁ ବୋଝାଇ କଲା । ସୋହନ ଏ ଖବର ପାଇ କହିଲା, "ମୁଁ ବି ବଣିଜ କରିବାକୁ ଦୂରଦୂରାନ୍ତରକୁ ଯିବି । ମୁଁ ନିଶ୍ଚୟ ମୋହନକୁ ବଳିଯିବି ।"

ସୋହନର ପୁଞ୍ଜି ନ ଥିଲା । କିନ୍ତୁ ସେ କରଜ କରି ମୋହନ ଯେତେ ପ୍ରକାର ପଣ୍ୟଦ୍ରବ୍ୟ ସଂଗ୍ରହ କରିଥିଲା, ସେତେ ପ୍ରକାର ସଂଗ୍ରହ କଲା । ସେ ବି ପାଞ୍ଚଶହ ବଳଦଗାଡି ସଂଗ୍ରହକଲା ।

ଯେତେବେଳେ ମୋହନ ଏକଥା ଶୁଣିଲା, ସେ ପ୍ରମାଦ ଗଣିଲା । ସେ ସୋହନ ପାଖକୁ ଯାଇ କହିଲା, "ଆମେ ଦୁଇଜଣ ଯାକ ଯଦି ଗୋଟିଏ ରାସ୍ତାରେ ଯିବା ତେବେ କିଛି ସମୟ ଅନ୍ତରରେ ଯିବା ଉଚିତ । କାରଣ ଏକାବେଳେକେ ହଜାରେଟା ଶଗଡର ଓଜନ ସମ୍ଭାଳିବା

ଭଳି ସଡକ ନାହିଁ । ତା'ଛଡା ବାଟରେ ଯେଉଁ ଗାଁ ଗଣ୍ଡାମାନ ପଡ଼ିବ, ଯେଠାରେ ଏକାବେଳେ ଏତେ ମଣିଷ ଓ ବଳଦଙ୍କ ସକାଶେ ଖାଦ୍ୟ ପେୟ ମିଳିବ ନାହିଁ । ତେଣୁ ଆମେ ଅଲଗା ଅଲଗା ଯିବା । ତୁମେ ଆଗେ ଯିବ କି ପଛେ ଯିବ, ତାହା ତୁମେହିଁ ସ୍ଥିର କର ।"

ସୋହନ ଖୁବ୍ ଖୁସି ହେଲା । ସେ ଚିନ୍ତାକଲା, "ମୁଁ ନିଶ୍ଚୟ ଆଗେ ଯିବି । ସଡକ ଭଲ ପଡ଼ିବ । ମୋ ବଳଦମାନେ ତଟକା ଘାସ ପାଇବେ । ମୋ ଲୋକେ ଗାଁ ଗଣ୍ଡାରେ ଭଲ ଅଭ୍ୟର୍ଥନା ପାଇବେ । ସହରରେ ପହଞ୍ଚିବା ପରେ ମୋ ଜିନିଷତକ ଆଗେ ବିକ୍ରୟ ହୋଇଯିବ ।"



ମୋହନ ମୁଣ୍ଡକୁ ବି ପ୍ରଥମେ ଏଇସବୁ ଯୁକ୍ତି ଜୁଟିଥିଲା । କିନ୍ତୁ ସେ ବହୁତ ଭବିଚିନ୍ତି ଭିନ୍ନପ୍ରକାର ସିଦ୍ଧାନ୍ତ କରିଥିଲା । ଅତଏବ ସୋହନ ଯେତେବେଳେ ଆଗେ ଯିବାପାଇଁ ପ୍ରସ୍ତାବ କଲା, ମୋହନ ସେଥିରେ ସାନନ୍ଦେ ରାଜିହେଲା ।

ପାଞ୍ଚଶହ ଶଗଡ଼ ଧରି ସୋହନ ଯାତ୍ରା ଆରମ୍ଭ କଲା । ନିକଟ ଭବିଷ୍ୟତରେ ସେ କେତେ ଧନ ସମ୍ପଦର ମାଲିକ ହେବ, ସେଇ କଥା କଳନା କରି ସେ ଆନନ୍ଦରେ ଗୀତ ବୋଲୁଥାଏ । କିନ୍ତୁ ତା'ର ସେ ଦିବାନିଦ୍ରା ଦୀର୍ଘସ୍ଥାୟୀ ହେଲା ନାହିଁ। ସଡ଼କର ଅବସ୍ଥା ଭଲ ନଥିଲା । ରାସ୍ତାଯାକ ବଡ ବଡ ପଥରମାନ ପଡ଼ିଥିଲା; ପୁଣି ଅନେକ ସ୍ଥାନରେ ଖାଲ ବା ଢିପ ।



ରାସ୍ତାରୁ ସେସବୁ ପଥର ସଫା କରିବାକୁ ପଡ଼ିଲା ; ଖାଲ ପୋତିବାକୁ ପଡ଼ିଲା । ତେବେ ଯାଇ ଶଗଡ଼ଯାକ ଆଗକୁ ଚାଲିଲେ । ଏସବୁ କାମରେ ଅବଶ୍ୟ ରାସ୍ତାକଡ଼ର ଗ୍ରାମବାସୀମାନେ ସାହାଯ୍ୟ କଲେ, କିନ୍ତୁ ସେମାନଙ୍କୁ ମଜୁରୀ ଦେବାକୁ ପଡ଼ିଲା । ପୁଣି ଏସବୁ କରିବାକୁ ବହୁତ ସମୟ ମଧ୍ୟ ଲାଗିଲା ।

ରାସ୍ତା ମରାମତ କରି କରି ଶଗଡ଼ସବୁ ଧୀରେ ଧୀରେ ଆଗେଇ ଚାଲିଲେ । କିଛି ସମୟ ପରେ ସେମାନେ ଗୋଟିଏ ଜଙ୍ଗଲ ଭିତରେ ପଶିଲେ । ଶଗଡ଼ଗୁଡ଼ିକୁ ଆଗେଇନେବା ସକାଶେ ଅନେକ ଗଛଲତା କଟାକଟି କରିବାକୁ ପଡ଼ିଲା । ସେ ଜଙ୍ଗଲରେ ଥିଲେ ଅନେକ ହିଂସ୍ରଜନ୍ତୁ : ବାଘ, ସିଂହ, ଚିତାବାଘ ଓ ହେଟାବାଘ ପ୍ରଭୃତି । ରାତିରେ ଯେତେବେଳେ କ୍ଳାନ୍ତ ହୋଇ ସଭିଏଁ ଶୋଇ ପଡ଼ିଲେ, ଏଇ ଜନ୍ତୁମାନେ ଅନେକଗୁଡ଼ିଏ ବଳଦଙ୍କୁ ମାରି ଖାଇଗଲେ ।

ସୋହନ ଓ ତା'ର ସହକାରୀମାନେ ବଡ଼ ହତାଶ ହୋଇପଡ଼ିଲେ । ଘରକୁ ଫେରିଯିବେ କି ଆଗକୁ ଯିବେ, ଯେତେବେଳେ ସେମାନେ ଏଇ କଥା ଆଲୋଚନା କରୁଛନ୍ତି, ସେତିକିବେଳେ ସେମାନଙ୍କ ବିପରୀତ ଦିଗରୁ ଗୋଟିଏ ଶଗଡ଼ ଆସୁଥିବାର ସେମାନେ ଦେଖିଲେ । ସେଇଟା ଗୋଟିଏ ବିରାଟ ଶଗଡ଼ । ଯୋଡ଼ାଏ ଧଳା ବଳଦ ତାକୁ ଟାଣୁଥିଲେ । ଭିତରେ ବସିଥିଲେ ଛଅଜଣ ସରିକି ମଣିଷ । ସେମାନଙ୍କ ଲୁଗାପଟାରୁ ପାଣି ବହି ପଡ଼ୁଥିଲା । ସେମାନେ ଧଳା ପଦ୍ମ ହାରଟିମାନ ପିନ୍ଧିଥିଲେ ।

ସୋହନ ସେମାନଙ୍କୁ ନମସ୍କାର କରି ନମ୍ର ଭାବରେ ପଚାରିଲା, "ଆପଣମାନେ କେଉଁ ରାସ୍ତାରେ ଆସୁଛନ୍ତି, ସେ ରାସ୍ତାରେ ଆମେ ଗଲେ ଆମକୁ ଯଥେଷ୍ଟ ଖାଦ୍ୟ ପେୟ ମିଳିବତ ?"

ସେମାନେ ଏକସ୍ବରରେ କହିଲେ, "ସେଥିରେ ସନ୍ଦେହ ଅଛି ? ଆମେ ତିନ୍ତିଯାଇଛୁଁ, ଦେଖୁନ ? ଆଉ ଆମ ଶଗଡ଼ ଚକକୁ ଚାହଁ । କାଦୁଅ ଲାଗିନାହିଁ ? ଆମେ ଯେଉଁ ଅଞ୍ଚଳରୁ ଆସୁଛୁଁ, ସେ ଅଞ୍ଚଳରେ ପ୍ରବଳ ବର୍ଷା ହୋଇଛି । ସବୁଜ କ୍ଷେତମାନଙ୍କରେ ଯିମିତି ଉଚ୍ଛୁଳା ଫସଲ ହୋଇଛି, ତାହା ଦେଖିଲେ ଆଖି ପୂରିଯିବ ।"

ସୋହନର ଶଗଡ଼ମାନଙ୍କରେ ମାଠିଆ ମାଠିଆ ପାଣି ଭର୍ତ୍ତି ହୋଇଥିବାର ଦେଖି ସେହି

ଯାତ୍ରୀମାନେ ହସରେ ବେଦମ୍ ହୋଇ କହିଲେ,, "ପାଣି ବୋହି ଗ୍ଭଲିଛ କାହିଁକି ହେ ? ପାଣି, ବଳଦଙ୍କ ଦାନା, ଏସବୁ ଫୋପାଡ଼ିଦେଇ ବଳଦଙ୍କ କଷ୍ଟ ଟିକିଏ ଲଘବ କରିଦିଅ । ଆଗରେ ଏସବୁ ବହୁତ ମିଳିବ ।"

ଯାତ୍ରୀମାନଙ୍କ ପରାମର୍ଶକ୍ରମେ ସେସବୁ ଫୋପାଡ଼ି ଦିଆଗଲା । ଓଜନ କମ୍ ହେବାରୁ ବଳଦମାନେ କିଛି ସମୟ ପର୍ଯ୍ୟନ୍ତ ବେଶ୍ ଖୁସ୍‌ଖୁସ୍‌ରେ ଗାଡ଼ି ଟାଣିଲେ । ସେହି ସବୁଜ ଅଞ୍ଚଳ କେତେବେଳେ ପଡ଼ିବ ବୋଲି ସୋହନ ଅନାଇ ବସିଥାଏ । କିନ୍ତୁ କ୍ରମେ ଅଧିକରୁ ଅଧିକ ଶୁଖିଲା ଅଞ୍ଚଳମାନ ପଡ଼ିବାକୁ ଲାଗିଲା । କିଛି ସମୟ ପରେ ସେମାନେ ଗୋଟିଏ ମରୁଭୂମିଭଳି ଅଞ୍ଚଳ ଭିତରେ ଯାଇ ପଡ଼ିଲେ ।

ପାଣି ଅଭାବରେ ଅନେକ ବଳଦ ଓ ଲୋକ ମଲେ । ଅନ୍ୟମାନେ କୌଣସି ପ୍ରକାରେ ଆଗକୁ ଗ୍ଭଲିଥାନ୍ତି । କିନ୍ତୁ କିଛିସମୟ ପରେ ସେମାନଙ୍କୁ ମିଛକହି ଠକିବାକୁ ସେହି ଦସ୍ୟୁମାନେ ଆସି ସେମାନଙ୍କ ଜିନିଷପତ୍ର ଓ ବଳଦମାନଙ୍କୁ ଛଡ଼ାଇନେଲେ । ସୋହନର ଅଧିକାଂଶ ଲୋକଙ୍କୁ ସେମାନେ ମାରି ପକାଇଲେ । ଅଳ୍ପ କେତେଜଣଙ୍କ ସହ ସୋହନ କୌଣସି ପ୍ରକାରେ ସେମାନଙ୍କ ହାବୁଡ଼ରୁ ଖସି ପଳାଇଲା ।

ସେମାନେ ଯାଇ ଅବଶେଷରେ ସହରରେ ପହଞ୍ଚିଲେ । ଯାହା ସାମାନ୍ୟ ଜିନିଷପତ୍ର ସେମାନଙ୍କ ପାଖରେ ଥିଲା, ସେମାନେ ତାହା ସେଠାରେ ବିକ୍ରିକଲେ । କିନ୍ତୁ ସେଠାକାର ଦରଦାମ ବିଷୟରେ ସେମାନଙ୍କ ଧାରଣା ନ ଥିବା ହେତୁ ଓ ସେମାନେ ଅତ୍ୟନ୍ତ ଦୟନୀୟ ଅବସ୍ଥାରେ ପଡ଼ିଥିବା ହେତୁ ସହରର ଲୋକେ ତାଙ୍କୁ ସେସବୁ ଜିନିଷ ପାଇଁ ଖୁବ୍ କମ୍ ଦାମ୍ ଦେଲେ । ସୋହନ ନିଃସ୍ୱ ଓ ନିରାଶ ହୋଇ ଘରକୁ ଫେରିଲା ।

ତା'ପରେ ମୋହନ ତାର ଅଭିଯାନ ଆରମ୍ଭ କଲା । ସୋହନ ଓ ତା'ଦଳ ସଡ଼କକୁ ପୂର୍ବରୁ ମରାମତି କରି ରଖିଥିଲେ । ବଣ ଭିତରଦେଇ ମଧ୍ୟ ରାସ୍ତା କରା ହୋଇଥିଲା । ହିଂସ୍ର ଜନ୍ତୁମାନେ ପୂର୍ବରୁ ଡରକି ଯାଇଥିଲେ ।

ଯଥାସମୟରେ ସେଇ ଦସ୍ୟୁମାନେ ଦେଖାଦେଲେ ସେମାନଙ୍କୁ ପାଣି ଓ ଖାଦ୍ୟପଦାର୍ଥମାନ

ଫୋପାଡ଼ି ଦେବାକୁ ପରାମର୍ଶ ଦେଲେ । କିନ୍ତୁ ବିଜ୍ଞ ମୋହନ ତା'ର ସହକାରୀମାନଙ୍କୁ କହିଲା, "ଏମାନଙ୍କ କଥାରେ ମୋର ବିଶ୍ୱାସ ହେଉନାହିଁ । ଆଗରେ ଏକ ଶୁଖିଲା ଅଞ୍ଚଳ ପଡ଼ିବ ବୋଲି ମନେ ହେଉଛି । ଏ ଲୋକଗୁଡ଼ିକ ଓଦା ଲୁଗା ଓ ପଦ୍ମହାର ପିନ୍ଧିଛନ୍ତି । କିନ୍ତୁ ନିକଟରେ ବର୍ଷା ହୋଇଛି ବୋଲି ମନେ ହେଉନାହିଁ । ଆକାଶ ମେଘମୁକ୍ତ । ଏମାନେ କିଛି ମତଲବ୍ ରଖି ଆମକୁ ଠକିବାକୁ ଚେଷ୍ଟା କରୁଛନ୍ତି ।"

ମୋହନ ସେ ଠକମାନଙ୍କ ପରାମର୍ଶରେ ମନ ଦେଲାନାହିଁ । ଅଳ୍ପସମୟ ପରେ ସେ ମରୁଭୂମିଟି ଭିତରେ ଯାଇ ପହଞ୍ଚିଲା । କିନ୍ତୁ ସେମାନଙ୍କ ପାଖରେ ପ୍ରଚୁର ଖାଦ୍ୟ ପେୟ ଥିବାରୁ ସେମାନଙ୍କୁ କିଛି ଅସୁବିଧା ପଡ଼ିଲା ନାହିଁ ।

ସହରରେ ପହଞ୍ଚି ସେମାନେ ସେଠାକାର ଦରଦାମ ବିଷୟରେ ଆଗେ ଖବରଖବର ସଂଗ୍ରହ କଲେ । ତା'ପରେ ସୁଯୋଗ ସୁବିଧା ଦେଖି ମୋହନ ତା'ର ପଣ୍ୟଦ୍ରବ୍ୟ ସବୁକୁ ଯଥେଷ୍ଟ ଲାଭରଖି ବିକ୍ରୟ କଲା ଓ ସନ୍ତୋଷ ସହକାରେ ଘରକୁ ଫେରିଲା ।



# ପ୍ରସାଦ

ଦକ୍ଷିଣ ଭରତର ଏକ ଛୋଟ ଗ୍ରାମରେ ଜଣେ ଗରୀବ କୃଷକ ବାସ କରୁଥିଲା । ତା'ର ଉମା ବୋଲି ଆଠବର୍ଷର ଗୋଟିଏ ଝିଅ ଓ ଗୋପାଳ ବୋଲି ଖୁବ୍ ଛୋଟ ପୁଅଟିଏ ଥିଲ । କୃଷକଟିର ସ୍ତ୍ରୀ ମରିଯିବା ଉତ୍ତାରୁ ଉମାହିଁ ଗୋପାଳ କଥା ବୁଝା ବୁଝି କରିବାର ଦାୟିତ୍ୱ ଗ୍ରହଣ କଲା । କେଇ ବର୍ଷପରେ କୃଷକଟି ମଧ୍ୟ ମରିଗଲା । ପିଲା ଦୁଇଟି ଛେଉଣ୍ଡ ହେଲେ ।

ଉମା ତା' ବୟସ ତୁଳନାରେ ଥିଲା ବହୁତ ବୁଦ୍ଧିମତୀ । ସେ ଗୋପାଳକୁ ଉଭୟ ବାପା ଓ ମାଆର ଯତ୍ନ ଓ ସ୍ନେହ ଦେଲା । ପୁଣି ଦୁହିଙ୍କ ସକାଶେ ତାକୁହିଁ ଖାଦ୍ୟ ସଂଗ୍ରହ କରିବାକୁ ପଡୁଥିଲା । ସେ ନିଜ ଜମି ହଳକରେ, ମଞ୍ଜି ବୁଣେ ଓ ଶସ୍ୟ ଅମଳକରେ । ପଡ଼ୋଶୀମାନେ ତାକୁ ଭଲ ପାଉଥିଲେ ଓ ସାହାଯ୍ୟ କରୁଥିଲେ । ଫଳରେ ଜମିରେ ଯାହା ଉତ୍ପାଦନ ହେଉଥିଲା, ସେଥିରେ ଭାଇ ଭଉଣୀ ଚଳି ଯାଉଥିଲେ ।

କେତେ ବର୍ଷ ବିତିଗଲା । ଗୋପାଳର ପାଠପଢ଼ା ଶେଷ ହେଲା । ଦିନେ ସେ ତା'ର ଭଉଣୀକୁ କହିଲା, "ମୋ କଥା ବୁଝାବୁଝି କରୁ କରୁ ତୁମର ଏତେଦିନ ଗଲା । ଏତେ-ବେଳକୁ ତୁମେ ବିଭା ହୋଇ ତୁମ ନିଜର ଗୋଟିଏ ନୂଆ ପରିବାର କରିବା କଥା । କିନ୍ତୁ ତୁମ ବିବାହ ପାଇଁତ ଗୁଡ଼ିଏ ଟଙ୍କା ଦରକାର । ମୋର ତ କିଛି ନାହିଁ ପୁଣି ଯୌତୁକ ବି କିଛି ଦେଇ ପାରିବି ନାହିଁ । କ'ଣ କରାଯିବ ?"

ଉମାର କିନ୍ତୁ କୌଣସି ଚିନ୍ତା ନ ଥିଲା । କିଛିଦିନ ପରେ ଗାଁର ଜଣେ ତରୁଣ ଆସି

ଉମାକୁ ବିବାହ କରିବ ବୋଲି ଗୋପାଳ ପାଖରେ ପ୍ରସ୍ତାବ ଦେଲା । ସେ କହିଲା ଯେ ତା'ର ଦାନ ଯୌତୁକ କିଛି ଦରକାର ନାହିଁ । ସେ ଉମାର ସାହସ ଓ ନିଃସ୍ୱାର୍ଥପରତାରେ ମୁଗ୍ଧ ହୋଇ ତାକୁ ବିଭା ହେବାକୁ ଚାହେଁ ।

ଯଥା ସମୟରେ ଉମାର ବିବାହ ହୋଇଗଲା । ସ୍ୱାମୀଘରକୁ ଚାଲିଯିବା ପୂର୍ବରୁ ସେ ଗୋପାଳକୁ କହିଲା, "ଶୀଘ୍ର ତୋର ମଧ୍ୟ ବିବାହ ହେବ । ପ୍ରତିବର୍ଷ ଶ୍ରାବଣ ମାସର ପ୍ରଥମ ଗୁରୁବାର ଦିନ ଲକ୍ଷ୍ମୀପୂଜା କରିବା ଆମ ଘରର ପରମ୍ପରା । ତୋ ବୋହୂ ଯେପରି ନିଶ୍ଚୟ ସେ ପୂଜା କରିବ, ଏବିଷୟରେ ତୁ ମୋତେ ପ୍ରତିଶ୍ରୁତି ଦେ ।" ବିନାଦ୍ୱିଧାରେ ଗୋପାଳ ତା' ଭଉଣୀର ଏଇ ଛୋଟ କଥାଟି ରଖିବା ପାଇଁ ପ୍ରତିଶ୍ରୁତି ଦେଲା ।

କେତେବର୍ଷ ବିତିଗଲା । ଗୋପାଳ ତା' ବିଲ ବାଡ଼ିରେ କଠୋର ପରିଶ୍ରମ କରି ପ୍ରଚୁର ଫସଲ ଉପୁଜାଉଥାଏ । କିଛିଦିନ ପରେ ସେ ସେହି ଗାଁର ଜଣେ ଧନୀ କୃଷକର ସୁନ୍ଦରୀ ଝିଅକୁ ବିଭାହେଲା । ଝିଅର ନାମ କମଳା ।

ଶ୍ରାବଣମାସ ଆସିଲା । ଗାଁଯାକ ଲକ୍ଷ୍ମୀପୂଜାର ଧୂମ୍‌ଧାମ୍ ଲାଗିଲା । ଏହି ପୂଜା ଉପଲକ୍ଷ୍ୟରେ ନୂଆ ବାହା ହୋଇଥିବା ଝିଅ ଓ ଭଉଣୀମାନଙ୍କୁ ବିଶେଷ ସମ୍ମାନ ସହକାରେ ଚର୍ଚ୍ଚା କରିବା ବିଧି । ନବ ବିବାହିତା କନ୍ୟାମାନଙ୍କର ଆଶୀର୍ବାଦରେ ଘରର ସମୃଦ୍ଧି ହେବ ବୋଲି ବିଶ୍ୱାସ । ସେମାନଙ୍କ ଅଭିଶାପରେ ଘରର ସର୍ବନାଶ ହୋଇପାରେ । ଗୋପାଳ ତା' ଭଉଣୀକୁ ଦେଇଥିବା ପ୍ରତିଶ୍ରୁତି କଥା ମନେ ପକାଇଲା । ସେ ତା' ସ୍ତ୍ରୀ କମଳାକୁ ସବୁକଥା କହିଲା । କମଳା ଆଡ଼ମ୍ବର ସହକାରେ ଲକ୍ଷ୍ମୀପୂଜା କରିବାକୁ ରାଜିହେଲା । କିନ୍ତୁ ଗୋଟାଏ ସର୍ତ୍ତରେ । ସେ କହିଲା, "ତୁମେ ତୁମ ଭଉଣୀକୁ ନିମନ୍ତ୍ରଣ କଲେ ଚଳିବ ନାହିଁ । ସେ ଗରୀବ ଘରର ବୋହୂ । ସେ ହୁଏତ ଛିଣ୍ଡାଲୁଗା ପିନ୍ଧି, ତା'ର ଅପରିଛନ୍ନ ପିଲାଗୁଡ଼ିକୁ ଧରି ଏଠାରେ ପହଞ୍ଚିବ । ମୋ ବାପଘରୁ ଆସିଥିବା ବନ୍ଧୁବାନ୍ଧବଙ୍କ ଆଗରେ ଆମକୁ ଲଜ୍ଜାଲାଗିବ । ଆମର ଏଭଳି ଗରୀବ ବନ୍ଧୁ ଅଛନ୍ତି ଜାଣିଲେ ସେମାନେ ହସିବେ ।"

ଏ କଥାରେ ଗୋପାଳ ରାଜି ହେଲା । ଧନବତୀ, ସୁନ୍ଦରୀ ସ୍ତ୍ରୀ ମନରେ କଷ୍ଟଦେବାକୁ ସେ ଇଚ୍ଛା କଲାନାହିଁ ।

ଶ୍ରାବଣର ପ୍ରଥମ ଗୁରୁବାରରେ ଗୋପାଳ ଘର ଲୋକାରଣ୍ୟ ହୋଇ ଉଠିଲା । ନାନା ପ୍ରକାର ଫୁଲ ଓ ଧୂପବତୀର ମହକରେ ଘର ଭରିଯାଇଥାଏ । ରୋଷେଇଶାଳରୁ ମଶଲା ବାସନା ଭାସିଆସୁଥାଏ । ବିଭିନ୍ନ ପ୍ରକାର ସୁସ୍ୱାଦୁ ଖାଦ୍ୟ ତିଆରି କରିବା ପାଇଁ ବିଶିଷ୍ଟ ରୋଷେଇଆମାନେ ନିଯୁକ୍ତ ହୋଇଥାନ୍ତି । ଅତିଥିମାନେ ପହଞ୍ଚିବା ମାତ୍ରେ ସେମାନଙ୍କୁ ପୁଷ୍ପମାଲ୍ୟ ଦିଆଯାଉଥାଏ, ତାଙ୍କ ଉପରେ ଗୋଲାପଜଳ ସିଞ୍ଚିଦିଆ ହେଉଥାଏ ଏବଂ ସେମାନଙ୍କୁ ଖିଲିପାନ ଦିଆ ହେଉଥାଏ ।

ଉତ୍ସବ ଖୁବ୍ ଜମି ଉଠିଥିବା ବେଳେହିଁ ଉମା ଆସି ପହଞ୍ଚିଲା । କମଳାର ସୁନ୍ଦର ମୁହଁ ଶେତା ପଡ଼ିଗଲା । ସେ ସେତେବେଳେ ଗୋଟିଏ ବଡ଼ ରୁପା ଥାଳିରେ ପ୍ରସାଦ ଧରି ସମସ୍ତଙ୍କୁ ବିତରଣ କରୁଥାଏ । ଉମା ଆସି ତାକୁ କୁଣ୍ଢେଇ ପକେଇ ନିଜପାଇଁ ପ୍ରସାଦ ଉଠେଇ-ନେଲା ଓ କହିଲା, "କମଳା ! ତୁମେ ଆଜି ବଡ଼ ସୁନ୍ଦର ଦେଖାଯାଉଛ । ମୋ ଭାଇଟି କାହିଁ ? ସେ ଯେ ମୋତେ ଦେଇଥିବା ପ୍ରତିଶ୍ରୁତି ରକ୍ଷା କରିଛି, ଏଥିରେ ମୁଁ ଅତ୍ୟନ୍ତ ଆନନ୍ଦିତ । ମୁଁ ଜାଣେ ତମେମାନେ କେତେ ବ୍ୟସ୍ତ ରହି ମୋତେ ଡାକିବାକୁ ଭୁଲିଯାଇଛ । ସେଥିରେ କିଛି ଯାଏ ଆସେ ନାହିଁ । ମୁଁ ତ ଆଉ ପର ନୁହେଁ ! ମୋ ଭାଇ ଘରକୁ ଆସିବା ପାଇଁ ମୁଁ କ'ଣ ନିମନ୍ତ୍ରଣକୁ ଅନାଇ ବସନ୍ତି ? "

ଉମା ଖୁସିମନରେ ଗପିଯାଉଥାଏ । ସେତେବେଳକୁ ସାରା କୋଠରୀ ଭର୍ତ୍ତି ଲୋକେ ଯେ ଚୁପ୍ ଚାପ ହୋଇ ଯାଇଥାନ୍ତି, ସେ କଥା ସେ ଲକ୍ଷ୍ୟ କରୁ ନ ଥାଏ । କମଳାର ଧନୀ ବନ୍ଧୁ-ବାନ୍ଧବ ଉମାର ବେଶଭୂଷା ଦେଖି ନାକ ଟେକୁଥାନ୍ତି । କମଳା ଅପମାନିତା ବୋଧ କରୁଥାଏ । ଗୋପାଳ ଲଜ୍ଜିତ ହୋଇ ପଡ଼ିଥାଏ ।

ସାତବର୍ଷ ଧରି ପ୍ରତିବର୍ଷ ଏହିପରି ହେଲା । ପ୍ରତିବର୍ଷ କମଳା ଆଡ଼ମ୍ବର ସହକାରେ ଲକ୍ଷ୍ମୀପୂଜା କରୁଥାଏ । ଶହ ଶହ ଅତିଥି ଆପ୍ୟାୟିତ ହେଉଥାନ୍ତି । ଉମାକୁ କେବେ ନିମନ୍ତ୍ରଣ କରା ହେଉ ନଥାଏ । ସବୁଥର ତାଳିପକା ଶାଢ଼ୀ ପିନ୍ଧି ସେଠାରେ ପହଞ୍ଚି କଦଳୀ ପତ୍ରରେ ପ୍ରସାଦ ପାଇ ଖୁସିମନରେ ଗୋପାଳ ଓ କମଳା ସହିତ କିଛି ସମୟ କଥାବାର୍ତ୍ତା କରି ସେମାନଙ୍କୁ ଆଶୀର୍ବାଦ ଦେଇ ସେ ଲେଉଟି ଯାଉଥିଲା । ଉଭୟ କମଳା ଓ ଗୋପାଳଙ୍କୁ ଏହା ବଡ ଅଡୁଆ ଲାଗୁଥାଏ ।



ଉମାର ସ୍ୱାମୀ ତା'ର ପରିବାରର ଭରଣପୋଷଣ ନିମନ୍ତେ କଠୋର ପରିଶ୍ରମ କରୁଥାଏ । ସେମାନଙ୍କର ସାମାନ୍ୟ ସମ୍ବଳକୁ ନେଇ ଉମା କିନ୍ତୁ ପରିତୃପ୍ତ ରହିଥାଏ । ତା' ପରେ ତା ସ୍ୱାମୀର ବ୍ୟବସାୟରେ ଉନ୍ନତି ଦେଖାଗଲା । ଘରକୁ ଅଧିକରୁ ଅଧିକ ପଇସାପତ୍ର ଆସିଲା । ସେମାନେ କ୍ରମେ ଧନୀ ହୋଇ ଉଠିଲେ । ଏଣିକି ସେମାନେ ଏକ ବିରାଟ କୋଠାରେ ବାସ କଲେ । ଉମା ପିନ୍ଧିଲା ସବୁଠାରୁ ମୂଲ୍ୟବାନ ରେଶମ ଶାଢୀ । କେତେ ଚାକର ଚାକରାଣୀ

ସେମାନଙ୍କ ପାଖରେ ଖଟିଲେ । ସ୍ୱରିଗୋଟି ସୁନ୍ଦର ଧଳା ଘୋଡା ଟାଣୁଥିବା ଗୋଟାଏ ସୁନ୍ଦର ଗାଡ଼ିରେ ବସି ଏଣିକି ଉମା ବୁଲେ ।

ଗୋପାଳ ଓ କମଳା ଉମାର ସୌଭଗ୍ୟ କଥା ଶୁଣିଲେ । ଶ୍ରାବଣ ମାସ ପାଖେଇ ଆସିବାରୁ କମଳା ତା' ସ୍ୱାମୀକୁ କହିଲା, "ଉମା ଘରକୁ ଯାଇ ତାଙ୍କୁ ଓ ତାଙ୍କ ସ୍ୱାମୀଙ୍କୁ ନିମନ୍ତ୍ରଣ କରିଆସ । ଖାଲି ହାତରେ ଯିବ ନାହିଁ । କିଛି ମିଠେଇ ଓ ନଡ଼ିଆ ନେଇଯାଅ । ଯେତେହେଲେ ସେ ତୁମର ବଡ଼ ଭଉଣୀ ।"

ଗୋପାଳ ଉମା ଘରକୁ ଯାଇ ବ୍ୟକ୍ତିଗତ ଭାବେ ନିମନ୍ତ୍ରଣ ଜଣାଇଲା । ଉମା ତା' ଭାଇକୁ ସ୍ନେହଭରେ ସଙ୍ଖୋଳି ନିଶ୍ଚୟ ଯିବବୋଲି ପ୍ରତିଶ୍ରୁତି ଦେଲା ।

ପୂଜାତିଥି ଉପସ୍ଥିତ ହେଲା । ଅତିଥିମାନେ ପହଞ୍ଚିବାକୁ ଲାଗିଲେ । ମନ୍ତ୍ର ପଢ଼ାହେଲା । ପ୍ରାର୍ଥନା ବୋଲା ହେଲା । ଫୁଲ ଓ କର୍ପୂର ବାସନାରେ ଘର ଭରିଗଲା । ହଠାତ୍ ଘୋଡ଼ାଟାପୁ ଶବ୍ଦ ଶୁଭିଲା । ଲୋକେ ଅନାଇଲେ । ସୁନ୍ଦର ଗାଡ଼ିଟିଏ ଆସି ଫାଟକ ପାଖରେ ରହିଲା । କଚୁଆନ ପାଖରେ ବସିଥିବା ଜଣେ ଭୃତ୍ୟ ଓହ୍ଲାଇ ଆସି ଗାଡ଼ିର ଦ୍ୱାର ଖୋଲି ଧରିଲା । ଉଜ୍ଜ୍ୱଳ ସୁବର୍ଣ୍ଣ ରଙ୍ଗର ବନାରସୀ ଶାଢ଼ୀ ପିନ୍ଧି, ଦେହରେ ହୀରା ଅଳଙ୍କାର ଝଲସାଇ ଯେଉଁ ସ୍ତ୍ରୀଲୋକ ଗାଡ଼ିରୁ ବାହାରି ଆସିଲେ, କମଳା ପ୍ରଥମେ ତାଙ୍କୁ ଚିହ୍ନି ପାରିଲା ନାହିଁ ।

ଉମା ବାସ୍ତବିକ ଅତ୍ୟନ୍ତ ସୁନ୍ଦର ଦେଖାଯାଉଥିଲା । କମଳା ତାକୁ ଅଭିବାଦନ କରି ସମ୍ଭ୍ରମରେ ବାଟ ଛାଡ଼ି ଗୋଟିଏ କଡ଼କୁ ଛିଡ଼ା ହେଲା । ଗୋପାଳ ଉମାକୁ ଗୋଟାଏ ସୁନ୍ଦର ଗଦିଲଗା ଚୌକିରେ ନେଇ ବସାଇଲା । କମଳା ରୁପା ଥାଳିଆରେ ନାନା ପ୍ରକାର ମିଠେଇ ଆଣି ପରଶିଲା । ଉମା କୋମଳ ଭାବରେ ଟିକିଏ ହସି ଗୋପାଳକୁ ଆଉ ଗୋଟାଏ ଗଦିଲଗା ଚୌକି ଆଣି ସେଠାରେ ଥୋଇବାକୁ କହିଲା ।

ଗୋପାଳ ଦୌଡ଼ିଯାଇ ଆଉ ଗୋଟାଏ ଚୌକି ଆଣି ଥୋଇଲା । ଉମା ତା'ର ସୁନାର

ଜରିଲଗା ଚଦରଟି ସେ ଚୌକି ଉପରେ ରଖିଲା । ସେ କମଳାକୁ ଇଙ୍ଗିତରେ ଡାକି ପଙ୍ଖାଟିଏ ନେଇ ଆସିବାକୁ ବରଦ କଲା ।

କମଳା ଦୌଡ଼ିଯାଇ ପଙ୍ଖାଟିଏ ଆଣି ଉମା ପାଖରେ ଛିଡା ହୋଇ ଧୀରେ ଧୀରେ ବିଞ୍ଚିବାକୁ ଲଗିଲା ।

ତା'ପରେ ଉମା ଗୋଟାଏ ପରେ ଗୋଟାଏ ଅଳଙ୍କାର ନିଜ ଦେହରୁ କାଢି ସେହି ଚୌକି ଉପରେ ରଖିଲା । ଗୋପାଳ ପଗ୍ଭରିଲା, "ଭଉଣୀ ! ଅଳଙ୍କାରଗୁଡ଼ିକ ବୋଧହୁଏ ଖୁବ୍ ଓଜନିଆ ହୋଇଛି !"



ଉମା କିଛି କହିଲା ନାହିଁ । ସବୁ ଅଳଙ୍କାର ଦେହରୁ ବାହାର କରି ଯେତେବେଳେ ଚୌକିରେ ରଖିସାରିଲା, ସେତେବେଳେ ସେ ରୂପା ଥାଳିଆରୁ ଗୋଟାଏ ଗୋଟାଏ ମିଠେଇ ନେଇ ଗୋଟାଏ ଗୋଟାଏ ଅଳଙ୍କାର ଉପରେ ଥୋଇଲା । ଲୋକେ ବିସ୍ମୟରେ ଅନାଇ ରହିଲେ ।

ଗୋପାଳ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ଇଏ କ'ଣ କରୁଛ ?"

ଉମା ହସିଲା । ତା'ପରେ ସେ କହିଲା, "ଯେଉଁମାନେ ପ୍ରକୃତ ଅତିଥି, ସେହିମାନଙ୍କୁ ମୁଁ ମିଠେଇତକ ଦେଉଛି । ଏଇ ବିବିଧ ମିଠେଇ ମୋ ପାଇଁ ବଢ଼ା ହୋଇନାହିଁ–ମୋର ମୂଲ୍ୟବାନ ପୋଷାକ ଓ ଅଳଙ୍କାରମାନଙ୍କ ପାଇଁ ବଢ଼ା ହୋଇଛି । ଖଣ୍ଡିଏ କଦଳୀ ପତ୍ରରେ ଟିକିଏ ପ୍ରସାଦ ପାଇଲେ ହିଁ ମୋର ତୃପ୍ତି । ଆଜିଯାଏ ମୋତେ ଓ ମୋ ପିଲାପିଲିଙ୍କୁ ତାହାହିଁ ମିଳିଛି ।"

ସମସ୍ତେ ନୀରବରେ ବସି ରହିଲେ । କିଛି ସମୟ ପରେ ଅତିଥିମାନେ ଗୋପାଳ ଓ କମଳା ଆଡକୁ ଅନାଇ ଚୁପ୍‌ଚୁପ୍ ନିଜ ନିଜ ମନ୍ତବ୍ୟମାନ ପ୍ରକାଶ କଲେ । ସେତେବେଳେ ଯଦି ପୃଥିବୀ ଦୁଇଖଣ୍ଡ ହୋଇ ସେମାନଙ୍କୁ ଭିତରକୁ ନେଇ ଯାଇଥାନ୍ତା, ତେବେ ବୋଧହୁଏ ଗୋପାଳ ଓ କମଳା ଆଶ୍ୱସ୍ତ ବୋଧ କରିଥାନ୍ତେ !

ତା'ପରେ ଧୀର ଭାବରେ ଉମା ସେମାନଙ୍କୁ କହିଲା, "ଧନ ଦୌଲତ ବେଶୀ କମ୍ ହେବା ସହିତ ସ୍ନେହ ଶ୍ରଦ୍ଧା ବେଶୀ କମ୍ ହେବା କଥା ନୁହେଁ । ମୁଁ ତାଳିପକା ଶାଢ଼ୀ ପିନ୍ଧି ଆସିଥାଏଁ ବା ସୁନ୍ଦର ରେଶମ ଶାଢ଼ୀ ପିନ୍ଧି ଆସିଥାଏଁ , ମୁଁ ସମାନ ଭାବରେ ତୁମମାନଙ୍କୁ ଆଶୀର୍ବାଦ କରିବି । ତୁମ ଘରେ ସର୍ବଦା ସମୃଦ୍ଧି ଓ ସୁଖ ବିରାଜିତ ଥାଉ ।"

# ସବୁଠୁଁ କୋମଳ ଶେଯ

ଅନେକ, ଅନେକ ଦିନ ତଳେ ଜଣେ ରାଣୀ ଥିଲେ । ତାଙ୍କ ନାମ ମୀନାକ୍ଷି । ତାଙ୍କୁ ରାତିରେ ମୋଟେ ଭଲ ନିଦ ହେଉ ନ ଥିଲା । ସାରା ରାତି ସେ ବିଛଣାରେ ଏକଡ଼ ସେକଡ଼ ହେଉଥିଲେ । ଫଳରେ ତାଙ୍କ ମିଜାଜ୍ ବଡ଼ ଖିଟିମିଟିଆ ହୋଇ ଯାଇଥିଲା । ମୁହଁରେ ବିରକ୍ତି ଓ ଅସନ୍ତୋଷ ଭାବ ଫୁଟି ଉଠିଥିଲା । ସେ ସର୍ବଦା ଅଭିଯୋଗ କରୁଥିଲେ, ମୋ ଶେଯ ଯଥେଷ୍ଟ ନରମ ହେଉନାହିଁ । ମୁଁ କିମିତି ଶୋଇବି ?"

ରାଜା ଦେଶ ବିଦେଶକୁ କେତେ ଲୋକ ପଠେଇଲେ । ସେମାନେ ସବୁଠୁଁ କୋମଳ, ଉତ୍କୃଷ୍ଟ ତୁଳାମାନ ସଂଗ୍ରହକରି ନେଇ ଆସିଲେ । ରାଜାଙ୍କ ପ୍ରଧାନ ଦରଜୀ ଅତି ସରସ ରେଶମ କନା ଭିତରେ ସେଇ ତୁଳା ପୁରାଇ ରାଣୀଙ୍କ ପାଇଁ ସୁନ୍ଦର ଶେଯଟିଏ ତିଆରିକଲେ । କିନ୍ତୁ ରାଣୀ ସନ୍ତୁଷ୍ଟ ହେଲେ ନାହିଁ । ସେ କହିଲେ, "ଇଏ ବହୁତ ଟାଣ । ଏହାଠୁ କୋମଳ ଶେଯଟିଏ ଯଦି ଯୋଗାଡ଼ ହୋଇ ନ ପାରିବ, ତେବେ ମୋର ଦେହ ଖରାପ ହେବା ନିଶ୍ଚିତ, ମୁଁ ହୁଏତ ମରିଯିବି । ନ ଶୋଇ ମଣିଷ କେତେଦିନ ବଞ୍ଚିରହିବ ?"

ରାଜାଙ୍କ ଉତ୍କଣ୍ଠାର ଅନ୍ତ ନ ଥିଲା । ସେ ବଗିଚା ଭିତରେ ଖାଲି ଏପଟ ସେପଟ ହେବାକୁ ଲାଗିଲେ । ରାଜାଙ୍କୁ ଏଭଳି ହତାଶ ହେବାର ଦେଖି ମନ୍ତ୍ରୀ ଯାଇ ଅଭିବାଦନ ଜଣାଇ କହିଲେ, "ହଜୁର୍ ! ମୋ ମୁଣ୍ଡକୁ ଭଲ ବୁଦ୍ଧିଟାଏ ଆସିଛି । ରାଣୀଙ୍କୁ ସନ୍ତୁଷ୍ଟ କଲା ଭଳି ଉପଯୁକ୍ତ ଶେଯଟାଏ ମୁଁ ବନାଇ ପାରିବି ବୋଲି ଭାବୁଛି ।"

ରଜା ବହୁତ ଖୁସି ହୋଇ ମନ୍ତ୍ରୀଙ୍କୁ ତାଙ୍କ ଯୋଜନା ବୁଝାଇ କହିବାକୁ ଅନୁରୋଧ କଲେ । ମନ୍ତ୍ରୀ କହିଲେ, "ମହାରାଜ ! ଆପଣଙ୍କ ଉଦ୍ୟାନରେ ଶହ ଶହ ପ୍ରକାର ଫୁଲ । ଜାଇ, ଜୁଇ, ଗୁମେଲି ଓ ବେଲ ଫୁଲମାନ ଦୁଧଠୁଁ ବଳି ଧଳା ଓ ତୁଷାରଠୁଁ ବଳି କୋମଳ । ଆମେ ମାଳିମାନଙ୍କୁ ଏଇ ନିର୍ଦ୍ଦେଶ ଦେବୁଁ ଯେ ପ୍ରତିଦିନ ସଞ୍ଜବେଳେ କଢ଼ ଗୁଡ଼ିକ ଠିକ୍ ଫୁଟି ଆସିବା ବେଳକୁ ସେମାନେ ସେଗୁଡ଼ିକ ତୋଳି ଆଣିବେ । ତା'ପରେ ତହିଁ ଭିତରୁ ସବୁଠୁଁ ନରମ ଫୁଲମାନ ବାଛି ରାଣୀଙ୍କ ଶେଯ ଉପରେ ବିଛାଇ ଦିଆ ହେବ । ସେ ଶେଯ ହେବ ଅତ୍ୟନ୍ତ କୋମଳ । ପ୍ରଭାତ ବେଳକୁ ସେସବୁ ଅଧ ଫୁଟା ଫୁଲ ପୂରା ଫୁଟିଯାଇ ରାଣୀଙ୍କ କୋଠରୀକୁ ମହକାଇ ଦେବ । ରାଣୀ ସେଥିରେ ସନ୍ତୋଷ ପାଇବେ ବୋଲି ମୋର ବିଶ୍ୱାସ ।"

ରଜା ଖୁସିହେଲେ । ପରଦିନ ରଜାଙ୍କ ମୁଖ୍ୟ ମାଳିକୁ ନୂଆ ବ୍ୟବସ୍ଥା କଥା ଜଣାଇ ଦିଆ ହେଲା । ସୂର୍ଯ୍ୟାସ୍ତ ବେଳକୁ ସେ ସବୁଠୁଁ କୋମଳ କଢ଼ମାନ ତୋଳି ଆଣିଲା । ପରିଚାରିକାମାନେ ସେସବୁ ନେଇ ରାଣୀଙ୍କ ଶେଯ ଉପରେ ବିଛାଇ ଦେଲେ । ସେ ରାତିରେ ରାଣୀଙ୍କର ଖୁବ୍ ଭଲ ନିଦ ହେଲା । ରଜା ଭାରି ଖୁସି ହୋଇ ମନ୍ତ୍ରୀଙ୍କୁ ବହୁତ ପୁରସ୍କାର ଦେଲେ ।

ଦିନ ପରେ ଦିନ, ସୂର୍ଯ୍ୟାସ୍ତ ବେଳକୁ ଫୁଲ କଢ଼ମାନ ତୋଳାହୁଏ ଓ ରାଣୀଙ୍କ ଶେଯରେ ବିଛାଇ ଦିଆ ହୁଏ । କ୍ରମେ ରାଣୀଙ୍କ ମୁହଁରୁ ବିରକ୍ତି ଭାବ ଦୂର ହେଲା ଓ ହସ ଫୁଟିଉଠିଲା । ଅବଶେଷରେ ସମସ୍ୟାଟିର ସମାଧାନ ହୋଇଗଲା ଭାବି ରଜା ଆଶ୍ୱସ୍ତ ହେଲେ ।

କିଛିଦିନ ଉତ୍ତାରୁ ଦିନେ ଭୋର ବେଳକୁ ହଠାତ୍ ରାଣୀ ଚିତ୍କାର କରି ଉଠିଲେ । ପରିଚାରିକାମାନେ ତାଙ୍କ ଶେଯକଡକୁ ଦୌଡ଼ି ଗଲେ । ରାଣୀ ମୀନାକ୍ଷି ବିଛଣା ଉପରେ ବସି ନିଜ ପିଠି ଆଉଁସି ହେଉଥିଲେ ଓ ରାଗରେ ଥରୁଥିଲେ ।

ରାଜା ବି ଦୌଡ଼ି ଆସିଲେ ଓ କ'ଣ ହେଲା ବୋଲି ଗଭୀର ଉତ୍କଣ୍ଠା ସହ ପ୍ରଶ୍ନକଲେ । ପରିଚାରିକାମାନେ ଡରି ମରି ଠିଆ ହୋଇଥିଲେ ।

ରାଣୀ ମୀନାକ୍ଷି ପ୍ରଶ୍ନକଲେ, "କିଏ କାଲି ମୋ ଶେଯ ପ୍ରସ୍ତୁତ କରିଥିଲା ?"



ପରିଚାରିକାମାନେ ପରସ୍ପର ଆଡ଼କୁ ଅନାଇଲେ । ଜଣେ ଥର ଥର କଣ୍ଠରେ କହିଲା, "ଆମେ ସଭିଏଁ ଶେଯ ତିଆରି କରିଥିଲୁଁ, ମହାରାଣୀ !"

ରାଣୀ କହିଲେ, ଆଚ୍ଛା ! ମାନିଯାଇ ଭଲ କଲ । ତମେମାନେ ତମ କର୍ତ୍ତବ୍ୟ ଠିକ୍ ଭବରେ ତୁଲାଇ ନାହଁ । ମୋ ଶେଯରେ କୌଣସି କଠିନ ଜିନିଷଟାଏ ରହି ଯାଇଛି । ମୁଁ ରାତିଯାକ ଶୋଇ ପାରିନାହିଁ ।"

ପରିଚାରିକାମାନେ କହିଲେ ଯେ ସେମାନେ ଯଥାସାଧ୍ୟ ସତର୍କତା ସହ ଶେଯ ପ୍ରସ୍ତୁତ

କରିଛନ୍ତି । କିନ୍ତୁ ରାଣୀ ସେକଥା ବିଶ୍ୱାସ କଲେନାହିଁ । ରାଜା ବିଛଣା ଭିତରେ ଖୋଜା ଖୋଜି କରି ରାଣୀଙ୍କୁ କଷ୍ଟ ଦେଇଥିବା ଜିନିଷଟି ବାହାର କରିବାକୁ ନିର୍ଦ୍ଦେଶ ଦେଲେ ।

ପୁଙ୍ଖାନୁପୁଙ୍ଖ ଭବେ ଅନୁସନ୍ଧାନ ଚ୍ଲିଲ୍ । ପ୍ରତି ଫୁଲକୁ ପରୀକ୍ଷା କରାଗଲ । ଶେଷରେ ସୁବାସିତ ପୁଷ୍ପ ସ୍ତୁପ ଭିତରୁ ଗୋଟିଏ ପୁଷ୍ପ ବାହାରିଲ୍, ଯାହା ଠିକ୍ ଭବରେ ନଫୁଟିଥିବା ଯୋଗୁଁ ଟାଣ ଲଗୁଥିଲ ।

ରାଜା ଅତ୍ୟନ୍ତ କ୍ରୁଦ୍ଧ ହେଲେ । କଢ଼ଗୁଡ଼ିକୁ ଯଥାର୍ଥ ଧ୍ୟାନ ଦେଇ ନିର୍ବାଚନ ନ କରିଥିବା ହେତୁ ସେ ପରିଚ୍ରିକାମାନଙ୍କୁ ଦୋଷ ଦେଲେ । ସେମାନେ ସମସ୍ତେ ତଥା ବଗିଚ୍ର ମୁଖ୍ୟମାଳି ତଡ଼ା ଖାଇଲେ ।

ରାଣୀଙ୍କୁ କିନ୍ତୁ କେହି ସାନ୍ତ୍ୱନା ଦେଇ ପାରିଲେ ନାହିଁ । ସେ କାନ୍ଦି କାନ୍ଦି କହିଲେ, "ମୁଁ ଆଉ ମୁହୂର୍ତ୍ତେ ଏଠାରେ ରହିବି ନାହିଁ । ମୋ ଭଇ ପାଖକୁ ଚ୍ଲିଯିବି ।"





ରାଜା, ମନ୍ତ୍ରୀ ଓ ପାତ୍ରମିତ୍ରମାନେ ରାଣୀଙ୍କ ମତ ବଦଳାଇଦେବା ପାଇଁ ବହୁତ ଚେଷ୍ଟା କଲେ। କିନ୍ତୁ ରାଣୀ କାହାରି କଥା ଶୁଣିଲେ ନାହିଁ । ଅଗତ୍ୟା ରାଣୀଙ୍କୁ ତାଙ୍କ ଭାଇଙ୍କ ଘରକୁ ପଠାଇବାର ବ୍ୟବସ୍ଥା ହେଲା । ସମୁଦ୍ର ସେପାରି ଏକ ସୁଦୂର ରାଇଜରେ ରାଣୀଙ୍କ ଭାଇ ରାଜୁତି କରନ୍ତି । ସେଠାକୁ ଯିବା ସହଜ ନୁହେଁ । ରାଜାଙ୍କ ବରାଦରେ ଏକ ବଡ଼ ଧରଣର ବିଳାସପୂର୍ଣ୍ଣ ଜାହାଜ ତିଆରି ହେଲା । ଦୀର୍ଘ ଜଳ ପଥରେ ରାଣୀଙ୍କ ସେବା ପାଇଁ ବଛା ବଛା କେତେଜଣ ପରିଚାରକ ପରିଚାରିକା ତାଙ୍କ ସାଥିରେ ଗଲେ । ଜାହାଜର ଚାଳକ ଓ କର୍ମଚାରୀମାନଙ୍କୁ ରାଜା କହିଲେ ଯେ ସେମାନେ ସୁରୁଖୁରୁରେ ରାଣୀ ମୀନାକ୍ଷିଙ୍କୁ ପହଞ୍ଚାଇଦେଇ ଆସିଲେ ଥଳି ଥଳି ସୁନା ପୁରସ୍କାର ପାଇବେ ।

ଭଲରେ ଭଲରେ ଯାତ୍ରା ଆରମ୍ଭ ହେଲା । ମୃଦୁ ସାମୁଦ୍ରିକ ମଳୟରେ ରାଣୀଙ୍କ ବିରକ୍ତି ଅପନୋଦନ ହେଲା । ତାଙ୍କ ମୁହଁରେ ପୁଣି ହସ ଫୁଟିଉଠିଲା । କିନ୍ତୁ ଠିକ୍ ପରଦିନ ସମୁଦ୍ରରେ ହେଲା ଭୟଙ୍କର ତୋଫାନ । ଜାହଜ ବୁଡ଼ିଗଲା । ପ୍ରାଣ ବିକଳରେ ସଭିଏଁ ପାଣିଭିତରକୁ ଡେଇଁପଡ଼ିଲେ । ରାଣୀ ଖଣ୍ଡିଏ କାଠପଟା ଉପରେ ଭରାଦେଇ କୌଣସି

ମତେ ବଞ୍ଚିଗଲେ । ଘଣ୍ଟା ଘଣ୍ଟା ଧରି ପାଣିରେ ଭସିରହି ସେ ଯାଇ ଗୋଟିଏ ଅଜଣା ରାଇଜରେ ଲାଗିଲେ । କୂଳକୁ ଉଠିବା ବେଳକୁ ତାଙ୍କ ଦେହରେ ଆଉ ବଳ ନ ଥାଏ । ଅଦୂରରେ କୁଡ଼ିଆଟିଏ ଦେଖିପାରି ସେ ବହୁ କଷ୍ଟରେ ସେଠାରେ ଯାଇ ପହଞ୍ଚିଲେ ।

ସେ କୁଡ଼ିଆରେ ବୁଢ଼ା ବୁଢ଼ୀ ଦୁଇଜଣ ରହୁଥିଲେ । ମୀନାକ୍ଷି ସେ ଦୁହିଁଙ୍କ ଆଗରେ ତାଙ୍କ ଦୁର୍ଦ୍ଦଶା ବର୍ଣ୍ଣନା କଲେ । କିନ୍ତୁ ସେ ଜଣେ ରାଣୀ ବୋଲି କହିଲେ ନାହିଁ ।



ବୁଢ଼ା ବୁଢ଼ୀ ରାଣୀଙ୍କୁ ଖାଇବାକୁ ପିଇବାକୁ ଦେଇ କହିଲେ, "ଯେତେଦିନ ଇଚ୍ଛା ତୁମେ ଆମ ପାଖରେ ରହିପାର । ଆମର ଆସି ବହୁତ ବୟସ ହେଲଣି । ତୁମ ଭଳି ଜଣେ ଝିଅର ସେବା ଆମର ଖୁବ୍ ଦରକାର ।"

ବୁଢ଼ା ବୁଢ଼ୀଙ୍କର ଅଥର୍ବ ଅବସ୍ଥା ଦେଖି ମୀନାକ୍ଷି ନିଜେ ମେହେନତ କରି ସେମାନଙ୍କୁ ସାହଯ୍ୟ କରିବାକୁ ସ୍ଥିର କଲେ । ପାଖରେ ଗୋଟିଏ ନଦୀ ଉପରେ ପୋଲ ତିଆରି ହେଉଥିଲା । ସେଠାରେ ଶହ ଶହ ସ୍ତ୍ରୀ ପୁରୁଷ କାମ କରୁଥିଲେ । ମୀନାକ୍ଷି ଯାଇ ସେଠାରେ କାମକରି କିଛି ଉପାର୍ଜନ କରିବାକୁ ଠିକ୍ କଲେ । କିନ୍ତୁ ଦିନେ କୋମଳ ମଲ୍ଲି ଶଯ୍ୟାରେ ଶୋଇ ମଧ୍ୟ ତାଙ୍କର ନିଦ ହେଉ ନ ଥିଲା । ଆଜି ସେ ଏତେ ପରିଶ୍ରମ କରିପାରିବେ ତ ? ଏକଥା ଭବି ସେ କାନ୍ଦିଲେ । କିନ୍ତୁ ତାଙ୍କର ଅନ୍ୟ କିଛି ଉପାୟ ନ ଥିଲା । ସେ ଅନ୍ୟମାନଙ୍କ ସାଥିରେ କାମ କରିବାକୁ ଲାଗିଲେ । ପ୍ରତିଦିନ ଯାହା ମଜୁରି ମିଳେ ସେଥିରେ ସେ ବୁଢ଼ା ବୁଢ଼ୀ ଓ ନିଜ ପାଇଁ ଖାଦ୍ୟଦ୍ରବ୍ୟ ଓ ଲୁଗାପଟା କିଣନ୍ତି । ଅବଶ୍ୟ ଲୁଗାପଟା ଓ ଖାଇବା ପିଇବାରେ ତାଙ୍କୁ ସବୁଠୁଁ ଗରୀବ ଭବରେ ଚଳିବାକୁ ପଡୁଥିଲା । କିନ୍ତୁ ସେ ବିଷୟରେ ତାଙ୍କର ଆଉ କୌଣସି ଅଭିଯୋଗ ନଥିଲା । ଚଟାଣ ଉପରେ ସପଟାଏ ପାରି ସେ ଶୋଉଥିଲେ । ଦିନ ସାରା ଖଟିବା ପରେ ତାଙ୍କୁ ଏଡ଼େ କ୍ଳାନ୍ତ ଲାଗୁଥିଲା ଯେ ମୁଣ୍ଡ ତକିଆରେ ନ ଟେକୁଣୁ ତାଙ୍କୁ ନିଦ ମାଡ଼ି ଆସୁଥିଲା ।

ଦିନେ ସେ ରାଜ୍ୟର ରାଜା ପୋଲକାମ ଦେଖିବାକୁ ଆସିଲେ । ସଞ୍ଜବେଳକୁ ଯେତେବେଳେ ଲୋକଙ୍କୁ ମଜୁରି ଦେବା ସମୟ ଆସିଲା, ସେତେବେଳେ ରାଜା ନିଜ ହାତରେ ମଜୁରି ଦେବାକୁ ଇଚ୍ଛା କଲେ ।

ଜଣ ଜଣ କରି ରାଜାଙ୍କ ହାତରୁ ପଇସା ନେଉଥା'ନ୍ତି । ଯେତେବେଳେ ମୀନାକ୍ଷି ଆସି ତାଙ୍କ ଆଗରେ ଛିଡ଼ା ହେଲେ, ସେତେବେଳେ ରାଜା ବିସ୍ମୟରେ ଆଖି ବଡ଼ ବଡ଼ କରି ତାଙ୍କ ଆଡ଼କୁ ଅନାଇ ରହିଲେ । ଯେତେ ଛିଣ୍ଡା ଲୁଗା ପିନ୍ଧିଲେ ବି ନିଜ ଭଉଣୀ କୁ ସେ ନ ଚିହ୍ନନ୍ତେ କିପରି ?

ରଜା ଉଠିପଡ଼ି ଭଉଣୀକୁ କୁଣ୍ଢାଇ ପକାଇଲେ । ଉଭୟଙ୍କ ଆଖିରୁ ଧାର ଧାର ଲୁହ ବହିଗଲା । ସମସ୍ତେ ଭାବିଥିଲେ ଯେ ଜାହାଜ ବୁଡ଼ିରେ ରାଣୀ ମୀନାକ୍ଷି ମରିଯାଇଛନ୍ତି । ବର୍ତ୍ତମାନ ସମସ୍ତଙ୍କ ଆନନ୍ଦ କଥା କହିଲେ ନ ସରେ । ରାଜା କହିଲେ, "ଭଉଣୀ ! ତୁ କେତେ ଦୁଃଖ କଷ୍ଟ ସହି ନ ଥିବୁ ! ତୋ ଛିଣ୍ଡାଲୁଗା, ଦୁର୍ବଳ ଦେହକୁ ଅନାଇ ମୋ ଛାତି ଫାଟି ଯାଉଛି !"

ରାଣୀ ହସି ହସି କହିଲେ, "ଭାଇ ! ଦୁଃଖ ପାଇବା ଦୂରର କଥା, ମୋର ବହୁତ ଲାଭ ହୋଇଛି । ରାଣୀ ରୂପେ ସମସ୍ତ ସମ୍ଭୋଗ ଭିତରେ ଥାଇ ବି ମୁଁ ସୁଖ କ'ଣ ଜାଣି ନ ଥିଲି । କୋମଳତମ ଶେଯରେ ବି ମୋତେ ନିଦ ହେଉ ନଥିଲା । ମୋ ସ୍ୱାମୀ ମୋତେ ସୁଖୀ କରିବା ପାଇଁ କ'ଣ ନ କରିଛନ୍ତି ? କିନ୍ତୁ କେଉଁଥିରେ ମୋର ଆନନ୍ଦ ନ ଥିଲା । ବର୍ତ୍ତମାନ ମୁ ଜାଣିଛି, ଲୋକେ କିଭଳି ଜୀବନ-ସଂଗ୍ରାମ ଭିତରେ ଦିନ କାଟୁଛନ୍ତି । ଭାଗ୍ୟ ଚକ୍ରରେ ମୁଁ ସେମାନଙ୍କ ସହିତ କାନ୍ଧକୁ କାନ୍ଧ ମିଳାଇ କାମ କରିଛି । ଯେତିକି କଠିନ କାମ କରିଛି, ସେତିକି ଗଭୀର ନିଦ ବି ଉପଭୋଗ କରିଛି । ଫୁଲ ଶେଯ ଲୋଡ଼ିନାହିଁ । ସପହିଁ ହୋଇଛି ଯଥେଷ୍ଟ ।"

ରଜା ତାଙ୍କ ଭିଣୋଇଙ୍କ ପାଖକୁ ଭଉଣୀ ବଞ୍ଚିଥିବା ଖବର ତୁରନ୍ତ ପଠାଇଦେଲେ । ମୀନାକ୍ଷିଙ୍କ ସ୍ୱାମୀ ଖବର ପାଇବା ମାତ୍ରେ ଜାହାଜ ବୋଝାଇ ନାନାଦି ଉପହାର ସାମଗ୍ରୀମାନ ଧରି ସେ ରାଇଜରେ ଆସି ପହଞ୍ଚିଲେ । ସେ ଭାବିଥିଲେ, ଏଇସବୁ ଉପହାର ସାମଗ୍ରୀମାନ ଦେଖିଲେ ତେବେ ଯାଇ ମୀନାକ୍ଷିଙ୍କ ମୁହଁରେ ହସ ଫୁଟିବ । କିନ୍ତୁ ସେ ଦେଖି ଆଶ୍ଚର୍ଯ୍ୟ ହେଲେ, ମୀନାକ୍ଷି ପୂର୍ବାପେକ୍ଷା ବହୁତ ଅଧିକ ସୁନ୍ଦର ଦେଖାଯାଉଛନ୍ତି; ତାଙ୍କ ମୁହଁରେ ଶାନ୍ତି ଓ ସନ୍ତୋଷର ଚିହ୍ନ । ଯେଉଁ ବିରକ୍ତି ଭାବକୁ ରଜା ଡରୁଥିଲେ, ଅଥଚ ସବୁଦିନେ ସକାଳେ ଦେଖିବାରେ ଅଭ୍ୟସ୍ତ ହୋଇପଡ଼ିଥିଲେ, ସେ ଭାବ ପୂରା ପୂରି ଉଭେଇ ଯାଇଥିଲା ।

ରଜା କହିଲେ, "ତୁମେ ଆଜିକାଲି ଖୁବ୍ ଭଲ ଶୋଉଛ ନିଶ୍ଚୟ । ତୁମ ଭଲ

ତେବେ ତୁମପାଇଁ ଉପଯୁକ୍ତ ଶେଯର ସନ୍ଧାନ ପାଇଛନ୍ତି । ସେ ଅପୂର୍ବ ଶେଯ କେଉଁଥିରେ ତିଆରି ?''

ମୀନାକ୍ଷି କହିଲେ, "ଖାଲି ଚଟାଣରେ ଖଣ୍ଡିଏ ସପ ପାରି ମୁଁ ଆଜିକାଲି ଶୋଇ ପଡେ଼ ।"



# ମଲାମୂଷାର ମୂଳଧନ

ଏକଦା ବାରଣସୀ ସହରରେ ଚୁଲକ ନାମରେ ଜଣେ ପଣ୍ଡିତ ବାସ କରୁଥିଲେ । ଦିନେ ସେ କୌଣସି ତତ୍ତ୍ୱକଥା ଭାବି ଭାବି ଅନ୍ୟମନସ୍କ ଭାବରେ ବାଟ ଚାଲୁଛନ୍ତି, ହଠାତ୍ ତାଙ୍କ ଆଗରେ ମଲା ମୂଷାଟିଏ ପଡ଼ିଥିବାର ସେ ଦେଖିଲେ ।

"ଇଃ, କେଡ଼େ ଖରାପ ଦୃଶ୍ୟ !" ସେ ନିଜକୁ ନିଜେ କହିଲେ । ତା'ପରେ ପୁଣି ସେ କହିଲେ, "କିନ୍ତୁ ଜଣେ ବୁଦ୍ଧିମାନ ଲୋକ ଏଇ ମଲା ମୂଷାରୁ ମଧ୍ୟ ଲାଭ ଉଠାଇପାରେ । ଠିକ୍ ଭାବରେ ଏହାର ଉପଯୋଗ କରି ପାରିଲେ ହେଲା ।"

ପଣ୍ଡିତ ଏକଥା କହିଲା ବେଳେ ସେ ବାଟରେ ହରି ନାମକ ଗରିବ ଯୁବକଟିଏ ଯାଉଥିଲା । ପଣ୍ଡିତଙ୍କ କଥା ଶୁଣି ସେ ଭାବିଲା, "ଏଡ଼େ ବଡ଼ ଜ୍ଞାନୀ ଲୋକ ଯାହା କହୁଛନ୍ତି, ତାହା କେବେ ଅଯଥା କଥା ହୋଇ ପାରେନା ।" ହରି ମଲା ମୂଷାଟିକୁ ଉଠାଇ ନେଲା ।

କିନ୍ତୁ ମଲାମୂଷାଟିକୁ ନେଇ ସେ କରିବ କ'ଣ ? ହଠାତ୍ ତା' ମୁଣ୍ଡକୁ ଗୋଟାଏ ଧାରଣା ଆସିଗଲା । "ମୂଷା ଖାଇବାକୁ ବିଲେଇ କେଡ଼େ ସୁଖ ନ ପାଏ ! ମୋ ପଡ଼ୋଶୀ ଘର ବିଲେଇଟି ବହୁଦିନ ହେଲା ମୂଷାଟିଏ ନ ପାଇ ଝଡ଼ି ଗଲାଣି । ଏଇଟିକୁ ପାଇଲେ ସେ ବହୁତ ଖୁସି ହେବ ।" ହରି ସିଧା ପଡ଼ୋଶୀ ଘରକୁ ଯାଇ ମୂଷାଟିକୁ ଦେଖାଇଲା । ପଡ଼ୋଶୀ ବହୁତ ଖୁସୀ ହେଲେ ଓ ପଚାରିଲେ "କେଉଁଠୁ ପାଇଲ ? ଭଲ କଥା । ଏଇ ନିଅ କିଛି ପଇସା । ମୋତେ ମୂଷାଟି ଦେଇଦିଅ ।"



ହରି ପଇସାତକ ନେଇ ଗୋଟାଏ ଦୋକାନକୁ ଗଲା । ସେଠାରୁ ସେ କିଛି ମିଠେଇ କିଣିଲା । ତା'ପରେ ଗୋଟାଏ ମାଠିଆରେ କିଛି ପିଇବାପାଣି ଓ ସେ ମିଠେଇତକ ଧରି ସେ ସହର ବାହାରକୁ ଗଲା । ସହର ବାହାରେ ଥାଏ ଗୋଟାଏ ବଡ଼ ବଗିଚା । ବଗିଚାଟି ଆଗରେ ଥାଏ ଗୋଟାଏ ପ୍ରକାଣ୍ଡ ବରଗଛ । ହରି ମିଠେଇ ଓ ପାଣି ମାଠିଆ ନିଜ ଆଗରେ ଥୋଇ ସେହି ଗଛ ମୂଳରେ ବସି ରହିଲା ।

ଘଣ୍ଟାଏ ପରେ ଜଣେ ମାଳି ସେ ବଗିଚା ଭିତରୁ ବାହାରି ଆସିଲା । କାମ କରି ସେ କ୍ଳାନ୍ତ ହୋଇ ପଡ଼ିଥିଲା । ତାକୁ ଭୋକ ବି ଲାଗୁଥିଲା । ହରି ସେ ମାଳିକୁ ମିଠେଇ ଓ ପିଇବା ପାଣି ଯାଚିଲା । ବୁଢ଼ା ମାଳି ବଡ଼ ଆନନ୍ଦିତ ହୋଇ ହରିକୁ ଗୋଟାଏ ବଡ଼ ଫୁଲତୋଡ଼ା ଦେଇଦେଲା ।

ହରି ଫୁଲତକ ନେଇଯାଇ ବିକ୍ରି କରି ସେଥିରେ ଆହୁରି ବେଶି ମିଠେଇ କିଣି ସେହି ଗଛ ମୂଳରେ ଆସି ବସିଲା । କିଛି ସମୟ ପରେ ବଗିଚା ଭିତରୁ ଦଳେ ମାଳି ବାହାରି ଆସିଲେ । ହରି ସମସ୍ତଙ୍କୁ ମିଠେଇ ଓ ପିଇବା ପାଣିଦେଲା । ସେମାନେ ସମସ୍ତେ ହରିକୁ

କିଛି କିଛି ସୁନ୍ଦର ଫୁଲ ଦେଲେ । ହରି ସେ ଫୁଲତକ ବିକ୍ରିକରି ଯେଉଁ ପଇସା ପାଇଲା, ସେଥିରେ ଆହୁରି ବେଶି ପରିମାଣରେ ମିଠେଇ ଆଣି ପୁଣି ସେହି ଗଛମୂଳରେ ଆସି ବସିଲା । ଏଣିକି ସେ କେବଳ ମାଳିମାନଙ୍କୁ ଯେ ମିଠେଇ ଓ ପାଣି ଦେଲା, ତାହା ନୁହେଁ, ଯେତେ ଲୋକ ସେହି ସୁନ୍ଦର ବଗିଚା ଦେଖିବାକୁ ଆସିଲେ, ସେମାନଙ୍କୁ ବି ସେ ମିଠେଇ ବିକିଲା । ଏଣିକି ଏହା ହେଲା ତା'ର ଦୈନନ୍ଦିନ ବ୍ୟବସାୟ । ହରି ବହୁତ ଟଙ୍କା ଉପାର୍ଜନ କଲା ।

ଦିନେ ରାତିରେ ପ୍ରବଳ ଝଡ଼ ହେଲା । ଘଡ଼ଘଡ଼ିରେ ମେଦିନୀ ଥରି ଉଠିଲା । ବିଜୁଳିରେ ଦିଗ ଦିଗନ୍ତ ଚମକି ଉଠିଲା । ଗଛମାନ ଭୀଷଣ ଭାବରେ ଦୋହଲିବାକୁ ଲାଗିଲେ । କଡ଼ କଡ଼ ଶବ୍ଦକରି ବଡ଼ ବଡ଼ ଡାଳମାନ ଭାଙ୍ଗି ପଡ଼ିଲା । ଅଗଣିତ ପତ୍ର, ଫୁଲ, କଢ଼ମାନ ଛିଡ଼ି ପଡ଼ିଲେ ।

ସକାଳେ ଦେଖାଗଲା ସାରା ବଗିଚାରେ ଆବର୍ଜନା ଭର୍ତ୍ତି । ମାଳିମାନେ କ'ଣ କରିବେ ବୁଝି ପାରିଲେ ନାହିଁ । ରାଜା ବଗିଚା ଦେଖିବାକୁ ଆସିବା ପୂର୍ବରୁ ସେମାନେ ଏତେ ଆବର୍ଜନା କିପରି ସଫା କରିବେ ? ଯଦି ରାଜା ଆସି ବଗିଚାର ଏଇ ଅବସ୍ଥା ଦେଖନ୍ତି, ତେବେ ନିଶ୍ଚିୟ ସେମାନଙ୍କୁ କାମରୁ ତଡ଼ିଦେବେ । "କ'ଣ କରିବା ?" ପ୍ରତ୍ୟେକେ ପ୍ରତ୍ୟେକଙ୍କୁ ପଚାରିଲେ ।

ହରି ଏହା ଶୁଣି କହିଲା, "ମୋତେ ଯଦି ଉପଯୁକ୍ତ ମଜୁରି ଦେବ, ମୁଁ ବଗିଚା ସଫା କରିଦେବି ।" ମାଳିମାନେ ତତ୍‌କ୍ଷଣାତ ଏଥିରେ ରାଜି ହେଲେ ।

ସହରତଳିର ଛୋଟ ଛୋଟ ପିଲାମାନେ ହରିକୁ ଭାରି ଭଲ ପାଉଥିଲେ । ହରି ରାହୁଁ ରାହୁଁ ଦଳେ ପିଲାଙ୍କୁ ସେଠାରେ ଏକଜୁଟ କରି କହିଲା, "ପିଲାଏ ! ତମେମାନେ ଲାଗିପଡ଼ି ଅଧଘଣ୍ଟାଏ ଭିତରେ ବଗିଚାର ଆବର୍ଜନାତକ ସଫା କରି ଦେଇ ପାରନ୍ତ ନାହିଁ ? ଆଜି ରାଜା ବଗିଚା ଦେଖିବାକୁ ଆସିବା କଥା ।"

ସଙ୍ଗେ ସଙ୍ଗେ ପିଲାଏ କାମରେ ଲାଗି ପଡ଼ିଲେ । ସେମାନେ ବିଜୁଳି ବେଗରେ ଭଙ୍ଗାଡାଳ, ପତ୍ର, ଫୁଲ ସବୁ ଗୋଟାଇ ଆଣିବାକୁ ଲାଗିଲେ । ଅଧଘଣ୍ଟାଏ ଭିତରେ ବଗିଚା ସଫାସୁତୁରା ହୋଇ ସୁନ୍ଦର ଦେଖାଗଲା । ପିଲାମାନେ ଆବର୍ଜନାତକ ବଗିଚା ବାହାରେ ଗୋଟାଏ ସ୍ଥାନରେ

ଗଦା କରିବାକୁ ଯାଉଥିଲେ । କିନ୍ତୁ ହରି କହିଲା, "ଆଉ ଟିକିଏ ଦୂରକୁ ନେଇଗଲେ ଭଲ ହୁଅନ୍ତା ।"

ବଗିଚାଠୁଁ ଅଳ୍ପ ଦୂରରେ କୁମ୍ଭାର ଘର । ହରିର ନିର୍ଦ୍ଦେଶରେ ପିଲାମାନେ ତାଳ ପତ୍ରତକ ନେଇ ତା' ଘର ଆଗରେ ଜମାକଲେ । ହରି କୁମ୍ଭାରକୁ କହିଲା, "ମୁଁ ଯେତେ ଜାଳେଣି ଆଣିଛି, ସେଥିରେ ତୁମର ମାସଟିଏ ଚଳିଯିବ ।" କୁମ୍ଭାର ଖୁସି ହୋଇ ହରିକୁ ଚାରିଗୋଟି ସୁନା ମୋହର ଦେଲା ।

ଏଣେ ବଗିଚା ଏଡ଼େ ଶୀଘ୍ର ସଫା ହେବାର ଦେଖି ମାଳିମାନେ ବହୁତ ଖୁସି ହୋଇ ହରିକୁ ବାରଟି ସୁନାମୋହର ଦେଲେ । ହରିର ଆନନ୍ଦ କହିଲେ ନ ସରେ । ସେ ପନ୍ଦରଟି ମୋହର ଅଣ୍ଟାରେ ମାରିଲା । ବାକି ଗୋଟିକରେ ପ୍ରଚୁର ମିଠେଇ କିଣି ପିଲାମାନଙ୍କୁ ବାଣ୍ଟି ଦେଲା । ପିଲାଏ ମହା ଆନନ୍ଦରେ ନାଚି ନାଚି ସେଠାରୁ ଚାଲିଗଲେ ।

ହରି ସେଠାରୁ ଯାଇ କୋଡ଼ିଏଟା ମାଠିଆ କିଣି ଆଣିଲା । ରାସ୍ତା କଡରେ ଗୋଟାଏ ଗଛ ଛାଉଣୀ ତଳେ ସେସବୁ କଳସରେ ସେ ଥଣ୍ଡାପାଣି ଭର୍ତ୍ତି କରି ରଖିଲା ।

ସେହି ରାସ୍ତାରେ ଘାସ ବୋଝମାନ ମୁଣ୍ଡାଇ ପାଞ୍ଚଶହ ଶ୍ରମିକ ଯାଉଥିଲେ । ପରିଶ୍ରମ ଯୋଗୁଁ ସେମାନଙ୍କ ମୁହଁରୁ ଝାଳ ବୋହି ପଡୁଥିଲା । ସେମାନଙ୍କୁ ହରି ଥଣ୍ଡା ପାଣି ପିଇବାକୁ ଦେଲା ।

ସେମାନେ କହିଲେ, "ଏ ଶୀତଳ ପାଣି ପାଇ ଆମେ ତମକୁ କିପରି ଧନ୍ୟବାଦ ଦେବୁ ? ଏହାର ମୂଲ୍ୟ ବା କିପରି ଦେବୁ ? ଆମ ପାଖରେ ପଇସା ନାହିଁ । ଏ ଘାସତକ ଆମପାଖରୁ ସଙ୍ଗେ ସଙ୍ଗେ କିଣିନେଲା ଭଳି କେହି ଲୋକ ବି ଆଖିରେ ପଡୁନାହାନ୍ତି ।"

ହରି କହିଲା, "ମୋର ପଇସା ଦରକାର ନାହିଁ । ତମେ ସଭିଏଁ ଯଦି ବିଡ଼ାଏ ବିଡାଏ ଘାସ ମୋତେ ଦେଇଯିବ, ମୁଁ ବହୁତ ଖୁସି ହେବି । ତେବେ ଆଉ ଗୋଟାଏ ଭଲ ଖବର ତୁମମାନଙ୍କୁ ମୁଁ ଦେଇପାରେ । ଜଣେ ଘୋଡ଼ା ବେପାରୀ ଆଜି ଏ ସହରକୁ ଆସିବ । ତୁମମାନଙ୍କର ସବୁ ଘାସ ବିକ୍ରି ହୋଇଯିବ । ତେବେ ମୋର ଗୋଟାଏ ଅନୁରୋଧ ଅଛି ।

ମୁଁ ମୋ ଘାସତକ ତାକୁ ବିକି ନ ସାରିବା ଯାଏ ତମେମାନେ ତମ ଘାସ ତାକୁ ବିକିବ ନାହିଁ ।"

ଶ୍ରମିକମାନେ ସହର ଭିତରକୁ ଗ୍ଭଲିଯିବାର ଅଳ୍ପସମୟ ପରେ ସେଠାରେ ପାଞ୍ଚଶହ ଘୋଡ଼ା ଧରି ଘୋଡ଼ା ବେପାରୀ ପହଞ୍ଚିଲା । ଯେଉଁ ଅଞ୍ଚଳ ଭିତର ଦେଇ ବେପାରୀଟି ଆସିଲା, ସେଟା ଶୁଖିଲା ଅଞ୍ଚଳ । ସେ ତା' ଘୋଡ଼ାମାନଙ୍କ ପାଇଁ କିଛିଦିନ ହେଲା ଭଲ ଘାସ ପାଇ ନ ଥିଲା । ହରିକୁ ପାଞ୍ଚଶହ ରୁପାଟଙ୍କା ଦେଇ ସେ ପାଞ୍ଚଶହ ବିଡ଼ା ଘାସ ତା'ଠାରୁ କିଣିନେଲା ।

ହରି ଆହୁରି ପାଣି ଆଣି, ସେଇଠାରେ ବସିରହି ପଥିକମାନଙ୍କୁ ପାଣି ପିଆଇବାକୁ ଲାଗିଲା । ବଦଳରେ କିଏ ବା ତାକୁ ପଇସା ଦେଲା, କିଏ ବା ଦେଲା ଜିନିଷ । ହରି କ୍ରମେ ଅଧିକରୁ ଅଧିକ ସମ୍ପତ୍ତି ଜମାଇଲା ।

ଦିନେ ସେ ଶୁଣିବାକୁ ପାଇଲା ଯେ ଅନେକଗୁଡ଼ିଏ ଜାହାଜରେ ପଣ୍ୟଦ୍ରବ୍ୟମାନ ବୋଝେଇ କରି ଜଣେ ବଣିକ ସେଇ ସହରକୁ ଆସୁଛି । ସେ ତା'ର ସମସ୍ତ ସଞ୍ଚିତ ପଇସା ଦେଇ ଗୋଟିଏ ରଥ କିଣିଲା । ରଥକୁ ଉତ୍ତମ ରୂପେ ସଜାଇ ଗୀତ ବୋଲି ବୋଲି ସେ ଯାଇ ନଈକୂଳରେ ପହଞ୍ଚିଲା ।

ପ୍ରଥମ ଜାହାଜ କୂଳରେ ଲାଗିବାମାତ୍ରେ ସେ ଜାହାଜର କପ୍ତାନକୁ ଭେଟି ତାହାକୁ ଗୋଟାଏ ସୁନାମୁଦି ଉପହାର ଦେଲା । ତା'ପରେ କହିଲା, "ତୁମ ଛଅମାସର ଦରମା ଅପେକ୍ଷା ଏ ମୁଦିଟିର ମୂଲ୍ୟ ଅଧିକ । ଜାହାଜ ଗୁଡ଼ିକରେ ଥିବା ସମସ୍ତ ପଣ୍ୟଦ୍ରବ୍ୟ କିଣିନେବାରେ ତୁମେ ଯଦି ମୋର ସହାୟତା କରିବ, ତେବେ ତୁମକୁ ଆହୁରି ପୁରସ୍କାର ଦେବି ।" କପ୍ତାନ ରାଜିହେଲେ ।

ବଣିକ ଯେତେବେଳେ କପ୍ତାନଠାରୁ ଶୁଣିଲେ ଯେ ତାଙ୍କର ସବୁ ଜିନିଷ ଏକାଥରକେ କିଣିନେବା ପାଇଁ ଜଣେ ଲୋକ ପ୍ରସ୍ତୁତ ଅଛନ୍ତି, ସେ ଆନନ୍ଦିତ ହେଲେ । ଏଥିରେ ପରିଶ୍ରମ ଓ ସମୟ ଦୃଷ୍ଟିରୁ ତାଙ୍କର ବହୁତ ସୁବିଧା ହେଲା ।

ହରି ସହିତ ଦରଦାମ ଛିଡ଼ିଲା ବେଳକୁ ସହରର ଅନ୍ୟାନ୍ୟ ବ୍ୟବସାୟୀମାନେ ସେଠାରେ ଆସି ପହଞ୍ଚିଲେ । ହରି ଏକ ବିରାଟ ସୁବିଧା ଉଠାଇଥିବାର ଦେଖି ସେମାନେ ଅବଶ୍ୟ ବହୁତ ମନ ଖରାପ କଲେ । ତେବେ ନିରୁପାୟ ହୋଇ ହରିକୁ ଦୁଇଗୁଣ ମୂଲ୍ୟ ଦେଇ ସେମାନେ ହରି ପାଖରୁ ଜିନିଷତକ ପୁଣି କିଣି ନେଲେ । ହରି ସେଇ ଟଙ୍କାରୁ ବଣିକକୁ ତା'ର ପ୍ରାପ୍ୟ ଦେଇ କପ୍ତାନକୁ ପଚାଶଟି ସୁନା ମୋହର ଦେଲା । ତଥାପି ହରିର ପ୍ରଚୁର ଲାଭ ରହିଲା ।



ଏହାପରେ ହରି ପଣ୍ଡିତ ଚୂଳକଙ୍କ ପାଖରେ ଯାଇ ପହଞ୍ଚିଲା । ତାଙ୍କୁ ପ୍ରଣାମ କରି ତାଙ୍କ ଆଗରେ ସୁନା ମୋହର ଭର୍ତ୍ତି ଥଳିଟିଏ ରଖିଦେଲା । "ଏହା କ'ଣ ?" ଚୂଳକ ପଚାରିଲେ । "ଆପଣ ଚାରିମାସ ତଳେ ଯେଉଁ ଉପଦେଶ ଦେଇଥିଲେ, ସେହି ବାବଦରେ ଏହା ଦେଲି ।" ହରି ତାପରେ ଯାହା ଯାହା ଘଟିଥିଲା ସବୁ କହିଗଲା ।

ଚୂଳକ ଖୁବ୍ ଖୁସିହେଲେ । କିନ୍ତୁ ମୋହର ଥଳି ନେବାକୁ ରାଜି ହେଲେ ନାହିଁ । ସେ କହିଲେ, "ରାସ୍ତାରେ ଗଲାବେଳେ ମୋ ତୁଣ୍ଡରୁ ଯେଉଁ କଥା ବାହାରିଥିବ, ତାକୁ ତ କେତେ-ଲୋକ ଶୁଣିଥିବେ । ତୁମେ କେବଳ ସେ କଥାର ସଦୁପଯୋଗ କରି ପାରିଲ । ଏ ଅର୍ଥ ତୁମ ବୁଦ୍ଧି ଓ ପରିଶ୍ରମର ଫଳ । ଏହାର ପ୍ରତି ପଇସା କେବଳ ତୁମେ ଉପଭୋଗ କରିବାକୁ ହକ୍‌ଦାର ।"



# ନ୍ୟାୟ ବିଚାରର ସିଂହାସନ

ପ୍ରାଚୀନ ନଗରୀ ଉଜ୍ଜୟିନୀକୁ ଲାଗି ଗୋଟାଏ ବିସ୍ତୃତ ପାହାଡ଼ିଆ ଅଞ୍ଚଳ ଥିଲା । ଦିନେ ସେଠାରେ ଦଳେ ପିଲା ଖେଳୁଥିଲେ । ସେମାନଙ୍କ ଭିତରୁ ଗୋଟିଏ ପିଲା ହଠାତ୍ ଗୋଟାଏ ଛୋଟ ପାହାଡ଼ ଉପରକୁ ଉଠିଗଲା । ତା' ଗୋଡରେ କ'ଣ ବାଜିବାରୁ ସେ ତଳକୁ ଅନାଇ ଦେଖିଲା, ପାହାଡ଼ ମୁଣ୍ଡରେ ମସୃଣ ଚାରିକୋଣିଆ ପଥରଟିଏ । ପିଲାଟି ତା' ସାଥିମାନଙ୍କୁ ଡାକିଆଣି ସେହି ପଥର ଚେକା ଖଣ୍ଡିକ ଦେଖାଇଲା । ତା'ପରେ ସେହି ପଥର ଉପରେ ବସିପଡ଼ି ସେ କହିଲା, "ମୁଁ ହେଲି ରଜା । ତୁମେମାନେ ମୋର ପାରିଷଦ । ତମମାନଙ୍କର କୌଣସି ଗୁହାରି ଥିଲେ ମୋତେ ଜଣାଇ ପାର । ମୁଁ ବିଚାର କରିବି ।"

ପିଲାମାନଙ୍କୁ ଏହା ବେଶ୍ ମଜା ଲାଗିଲା । ସେମାନେ ଜଣ ଜଣ ହୋଇ ସେମାନଙ୍କ ମିଛ ଗୁହାରିମାନ ଜଣାଇଲେ । ନିଜ ନିଜ ସପକ୍ଷରେ ସେମାନେ ସାକ୍ଷୀ ବି ଦିଆଇଲେ । ରଜା ପିଲା ପ୍ରତି ଗୁହାରି ଉପରେ ତା'ର ରାୟ ଶୁଣାଇଲା ।

ସେଦିନ ସମସ୍ତେ ଏ ନୂଆ ଖେଳକୁ ଭାରି ପସନ୍ଦ କଲେ । ତେଣିକି ସବୁଦିନେ ସେମାନେ ସେଇ ଖେଳ ଖେଳିଲେ । ମିଛ ଗୁହାରିମାନ ଭଣିତା କରାହୁଏ, ମିଛ ଦୋଷୀମାନଙ୍କୁ ହାଜର କରାହୁଏ, ଜେରା ଚାଲେ, ଆଉ ଶେଷରେ ପଥର ଖଣ୍ଡିକ ଉପରେ ବସି ସେଇ ପିଲାଟି ସବୁଦିନେ ରାୟ ଦିଏ ।

କ୍ରମେ ସେ ପିଲାଟିର ବିଚକ୍ଷଣ ବିଚାର କଥା ଚାରିଆଡ଼େ ବ୍ୟାପିଗଲା । "ପିଲାଟିର କିଛି ଅଦ୍ଭୁତ କ୍ଷମତା ଅଛି," ଲୋକେ କୁହାକୁହି ହେଲେ ।

ଦିନେ ଦୁଇଜଣ କୃଷକଙ୍କ ମଧ୍ୟରେ ଖଣ୍ଡିଏ ଜମିର ମାଲିକାନା ନେଇ ଖୁବ୍ ଝଗଡ଼ା ହେଲା । ରଜାଙ୍କ ପାଖକୁ ନ ଯାଇ କୃଷକ ଦୁଇଜଣ ସେଇ ପାହାଡ଼ ଉପରକୁ ଯାଇ ସେଇ ପିଲା ଆଗରେ ନିଜ ନିଜର ଗୁହାରି କହିଲେ । ପିଲାଟି ସବୁ ଶୁଣି ଏଭଳି ନିରପେକ୍ଷ ରାୟ ଶୁଣାଇଲା ଯେ ସେଥିରେ କୃଷକ ଦୁଇଜଣ ଓ ସାଥିରେ ଥିବା ଲୋକେ ତଟସ୍ଥ ହୋଇଗଲେ ।

ସେହିଦିନଠୁଁ ସହରର ଲୋକେ ସେମାନଙ୍କ ବାଦ ବିସମ୍ବାଦମାନ ସେଇ ପିଲା ଆଗରେ ଆସି କହିବାକୁ ଲାଗିଲେ । ରଜାଙ୍କ ଦରବାରକୁ କେହି ଗଲେନାହିଁ । ପିଲାଟିର ରାୟରେ କେହି କେବେ ଅସନ୍ତୁଷ୍ଟ ହେବାର ଦେଖାଗଲା ନାହିଁ ।

ଏକଥା ଯାଇ ରଜାଙ୍କ କାନରେ ପଡ଼ିଲା । ରଜା ଯେତିକି ଆଶ୍ଚର୍ଯ୍ୟ ହେଲେ, ସେତିକି କ୍ରୁଦ୍ଧ ହେଲେ । ସେ କହିଲେ, "କିଏ ସେ ଟୋକା ଯିଏକି ମୋଠୁଁ ଭଲ ବିଚାର କରୁଛି ବୋଲି ଲୋକେ କହୁଛନ୍ତି ? ମୋର ବିଶ୍ୱାସ ହେଉ ନାହିଁ । ମୁଁ ନିଜେ ଯାଇ ଦେଖିବି ।"

ରାଜା ତାଙ୍କ ଦେହରକ୍ଷୀ ଓ ପାତ୍ର ଅମାତ୍ୟଙ୍କ ସହିତ ସେ ପାହାଡ଼ ପାଖକୁ ଯାଇ କିଛି ସମୟ ପର୍ଯ୍ୟନ୍ତ ସବୁ କଥା ଲକ୍ଷ୍ୟ କଲେ । ସେ ଯାହା ଦେଖିଲେ ଓ ଶୁଣିଲେ, ସେଥିରେ ସେ ନିଜେ ମୁଗ୍ଧ ଓ ବିସ୍ମିତ ହେଲେ ।

ସେ ତାଙ୍କ ମନ୍ତ୍ରୀମାନଙ୍କ ଆଡ଼କୁ ଅନାଇ କହିଲେ, "ପିଲାଟି ବାସ୍ତବିକ ବଡ଼ ଜ୍ଞାନୀ, ସନ୍ଦେହ ନାହିଁ । ଏଡ଼େ ଛୋଟ ପିଲାଟାଏ ଠାରୁ ଏଭଳି ବିଚାର ବୁଦ୍ଧି ମୁଁ କେବେ ଆଶା କରି ନ ଥିଲି । କେତେ ପଣ୍ଡିତ ତା' ପାଖରେ ହାରିଯିବେ ।"

ଲୋକେ ରାଜାଙ୍କୁ କହିଲେ, "ହଜୁର୍ ! ଯେଉଁପିଲାଟି ସବୁଦିନ ବିଚାର କରେ, ଇଏ ସେ ପିଲା ନୁହେଁ । ସେ ପିଲାଟି ଅସୁସ୍ଥ ହୋଇଥିବାରୁ ଆଉ ଜଣେ ପିଲା ତା' ଆସନରେ ବସି ଆଜି ବିଚାର କରୁଛି ।"

"ସତେ ? ଇଏତ ବଡ଼ ଆଶ୍ଚର୍ଯ୍ୟଜନକ ବ୍ୟାପାର ! ସେଇ ପଥର ଖଣ୍ଡିକ ପରୀକ୍ଷା କରି ଦେଖାଯାଉ । ହୁଏତ ସେ ପଥରରେ କିଛି ଯାଦୁକରି ଶକ୍ତି ଅଛି ।" ରାଜା କହିଲେ ।

ପଥର ଖଣ୍ଡିକୁ ଖୋଳି ବାହାର କରିବା ପାଇଁ ରାଜା ଆଦେଶ ଦେଲେ । ଖୋଳିବା ବେଳକୁ ଦେଖାଗଲା, ତାହା ଏକ ସୁନ୍ଦର ସିଂହାସନ । ତା'ର ଚାରି ଗୋଡ଼ରେ ଚାରିଗୋଟି ପରୀଙ୍କ ଚେହେରା ଖୋଦାଇ କରା ହୋଇଥିଲା । ଜଣେ ପଣ୍ଡିତ କହିଲେ ଯେ ସେ ସିଂହାସନଟି ଶହ ଶହ ବର୍ଷ ତଳର । ନ୍ୟାୟ ବିଚାର ଓ ବିଜ୍ଞ ରାୟ ପାଇଁ ପ୍ରସିଦ୍ଧ ରାଜା ବିକ୍ରମାଦିତ୍ୟ ସେ ସିଂହାସନରେ ବସି ବିଚାର କରୁଥିଲେ ।

ରାଜା ସିଂହାସନଟିକୁ ରାଜଆସକୁ ନେଇଯାଇ ତାଙ୍କ ଦରବାରରେ ସ୍ଥାପନ କରିବାକୁ ଆଦେଶ ଦେଲେ । ସେ କହିଲେ, "ଯେତେବେଳେ ମୋତେ କୌଣସି ବିଷୟ ବିଚାର କରି ରାୟ ଦେବାକୁ ପଡ଼ିବ, ସେତେବେଳେ ମୁଁ ଏହି ସିଂହାସନରେ ବସି ତାହା କରିବି ।"

ପରଦିନ ରାଜା ତାଙ୍କର ଲୋକାରଣ୍ୟ ଦରବାର ଭିତରେ ସେହି ସିଂହାସନଟି ଆରୋହଣ କରିବାକୁ ଯାଉଛନ୍ତି, ହଠାତ୍ ସେ ଏକ ବଜ୍ରଗମ୍ଭୀର ନିର୍ଦ୍ଦେଶ ଶୁଣିଲେ, "ରୁହ ।"

ରାଜା ରହିଯାଇ ଚାରିଆଡ଼କୁ ଅନାଇଲେ । ସେ ଅଚିରେ ବୁଝି ପାରିଲେ ଯେ କୌଣସି ମଣିଷ ତାଙ୍କୁ ସେ ନିର୍ଦ୍ଦେଶ ଦେଇ ନାହାନ୍ତି । ସିଂହାସନର ଚାରି ଗୋଡ଼ରେ ଖୋଦାଇ ହୋଇଥିବା ମୂର୍ତ୍ତିମାନଙ୍କ ମଧ୍ୟରୁ ଜଣେ ସେ ନିର୍ଦ୍ଦେଶ ଦେଇଥିଲା ।

ମୂର୍ତ୍ତିଟି କହିଲା, "ତୁମେ ଏ ସିଂହାସନରେ ବସିବାକୁ ଠିକ୍ ଯୋଗ୍ୟ ତ ? ତୁମେ ଏକଥା କହି ପାରିବ ଯେ ତୁମେ ଜୀବନରେ କେବେ କୌଣସି ଜିନିଷ ଆତ୍ମସାତ୍ କରି ନାହଁ ?"

ଲଜ୍ଜାରେ ରାଜାଙ୍କ ମୁଣ୍ଡ ତଳକୁ ହୋଇଗଲା । ସେ କହିଲେ, "ନିକଟରେ ମୁଁ ମୋର ଜଣେ ଅମାତ୍ୟଙ୍କର ଜମିବାଡ଼ି ଆତ୍ମସାତ୍ କରିଛି । ଅମାତ୍ୟଟି ଉପରେ ମୁଁ ବିରକ୍ତ ହୋଇଥିଲି ।"

"ସୁତରାଂ ତୁମେ ଅଯୋଗ୍ୟ । ତୁମେ ତିନିଦିନ ଧରି ପ୍ରାୟଶ୍ଚିତ୍ତ କରିବା ଉଚିତ ।" ଏତିକି କହି ପରୀଟି ଉଡ଼ି ଚାଲିଗଲା ।

ରାଜା ତିନିଦିନ କାଳ ଉପବାସ ଓ ପ୍ରାର୍ଥନାରେ କଟାଇଲେ । ଚତୁର୍ଥଦିନ ସେ ପୁଣି

ସିଂହାସନ ଆଡ଼କୁ ଆଗେଇ ଯାଆନ୍ତେ ଦ୍ୱିତୀୟ ପରୀଟି କହି ଉଠିଲା, "ରାଜା ! ତୁମେ କେବେ ମିଛକଥା କହି ନାହଁ ?"

ରାଜା ଆଉ ସିଂହାସନରେ ବସି ପାରିଲେ ନାହିଁ । ତାଙ୍କର ମନେ ପଡ଼ିଲା, ଅଡୁଆ ଅବସ୍ଥାରୁ ସହଜରେ ମୁକୁଳି ଆସିବା ପାଇଁ ସେ କେତେଥର ମିଛ କହିଛନ୍ତି । ଦ୍ୱିତୀୟ ପାଷାଣ-ପରୀଟି ଜୀବନ୍ତ ହୋଇ ଉଡ଼ି ଚାଲିଗଲା ।

ରାଜା ପୁଣି ତିନିଦିନ ଧରି ଉପବାସ ଓ ପ୍ରାର୍ଥନା କଲେ । ତା'ପରେ ପୁଣି ସେ ବହୁ ଦ୍ୱିଧା ସହକାରେ ସିଂହାସନରେ ବସିବାକୁ ଗଲେ । କିନ୍ତୁ ସେ ବସିବା ପୂର୍ବରୁ ତୃତୀୟ ପରୀଟି ପଚାରିଲା, ରାଜା କେବେ କାହାକୁ ଆଘାତ କରିଛନ୍ତି କି ନାହିଁ ।

ରାଜା କିଛି ଉତ୍ତର ନ ଦେଇ ପଛେଇ ଆସିଲେ । ତୃତୀୟ ପରୀଟି ଡେଣା ମେଲି ଉଡ଼ି ଚାଲିଗଲା ।

ପୁଣି ତିନିଦିନ ଉପବାସ ଓ ପ୍ରାର୍ଥନାପରେ ରାଜା ପୁନର୍ବାର ବହୁ ସଙ୍କୋଚ ସହକାରେ ସିଂହାସନ ଉପରେ ବସିବାକୁ ଗଲେ । ହଠାତ୍ ଶୁଣାଗଲା ଚତୁର୍ଥ ପାଷାଣ-ପରୀର ସ୍ୱର : "ଯେଉଁ ପିଲମାନେ ଏହା ଉପରେ ବସି ବିଚାର କରୁଥିଲେ, ସେମାନେ ନିରୀହ । ସେମାନଙ୍କ ହୃଦୟକୁ କୌଣସି କଳୁଷ ସ୍ପର୍ଶ କରି ନାହିଁ । ତୁମେ ଯଦି ନିଜକୁ ସର୍ବାପେକ୍ଷା ନ୍ୟାୟଶୀଳ ବିଚାରକ ବୋଲି ମନେ କରୁଥାଅ, ତେବେ ତୁମେ ଏଥିରେ ବସିପାର ।"

ରାଜା ବହୁତ ସମୟ ଛିଡ଼ା ହୋଇ ରହି ଚିନ୍ତା କରିବାକୁ ଲାଗିଲେ । ସେ ନିଜକୁ ନିଜେ କହିଲେ, "ଯଦି ଛୋଟ ପିଲଟାଏ ଏହା ଉପରେ ବସିବାକୁ ଯୋଗ୍ୟ ହୋଇ ପାରିଲା, ମୁଁ କାହିଁକି ବସି ପାରିବି ନାହିଁ ? ମୁଁ ରାଜା । ମୋଠୁଁ ଧନୀ, ଜ୍ଞାନୀ, ମହତ୍ ଓ ନିରପେକ୍ଷ ଆଉ କିଏ ହୋଇପାରେ ? ମୁଁ ନିଶ୍ଚୟ ଏହା ଉପରେ ବସିବି ।"

ରାଜା ଖୁବ୍ ଦୃଢ଼ତା ସହକାରେ ସିଂହାସନରେ ବସିବାକୁ ଉଦ୍ୟତ ହେଲେ । ଠିକ୍ ସେତିକି ବେଳେ ଚତୁର୍ଥ ପରୀଟି ଡେଣା ମେଲି ସିଂହାସନ ସହିତ ଉଡ଼ି ଚାଲିଗଲା ।

# ଚତୁର ସ୍ତ୍ରୀ

ପୁରକାଳରେ ଦିଲ୍ଲୀ ନଗରୀରେ ଛୋଟୁଲାଲ୍ ନାମରେ ଜଣେ ତରୁଣ କବିରାଜ ଓ ତାଙ୍କର ସୁନ୍ଦରୀ ସ୍ତ୍ରୀ ନନ୍ଦିନୀ ବାସ କରୁଥିଲେ । ଛୋଟୁଲାଲ୍ ସବୁବେଳେ ଅନ୍ୟମନସ୍କ ରହୁଥିଲେ । ଫଳରେ ସେ ରୋଗୀମାନଙ୍କୁ ଭୁଲ୍ ଔଷଧ ବତାଇ ଦେଉଥିଲେ । ପୁଣି ଗୋଟାଏ ଔଷଧ ସହିତ ଆଉ ଗୋଟାଏ ଔଷଧ ମିଶାଇ ଦେଇ କାହା ସହିତ କ'ଣ ମିଶାଇଲେ ସେକଥା ପାଶୋରି ଯାଉଥିଲେ । ଇମିତି ଭାବରେ ସମୟ ବିତି ଯିବାକୁ ଲାଗିଲା । ସାପକାମୁଡ଼ା ରୋଗୀକୁ ଛୋଟୁଲାଲ୍ କଫ ଔଷଧ ଓ ଆଣ୍ଠୁ ଜଖମ ହୋଇଥିବା ରୋଗୀକୁ ମୁଣ୍ଡବିନ୍ଧା ଔଷଧ ଦେଇ ଚାଲିଲେ ।

ଦିନେ ଜଣେ ତରୁଣ କୃଷକ ସର୍ଦ୍ଦିଗର୍ମି ପାଇଁ ଔଷଧ ନେବାକୁ କବିରାଜଙ୍କ ପାଖକୁ ଆସିଲା । ସେତିକିବେଳେ ଗୋଟିଏ ବୁଢ଼ୀ ମଧ୍ୟ ଆସି ପହଞ୍ଚିଲା । ବୁଢ଼ୀର କହୁଣୀ ଉପରେ ଗୋଟାଏ ଘାଛ ପଡ଼ିଯିବାରୁ କହୁଣୀଟି ଛେଚି ହୋଇ ଯାଇଥାଏ । ଛୋଟୁଲାଲ୍ ତାଙ୍କର ସବୁଦିନିଆ ରୀତିରେ ତରୁଣ କୃଷକର କହୁଣୀକୁ କାଟି ପକେଇଲେ ଓ ନିଜେ ବହୁ ଅଧ୍ୟବସାୟ କରି ପ୍ରସ୍ତୁତ କରିଥିବା ସର୍ଦ୍ଦିଗର୍ମିର ଅବ୍ୟର୍ଥ ଔଷଧ ବୁଢ଼ୀକୁ ଖୁଆଇଦେଲେ । ଏ ଘଟଣା ପରେ ଲୋକେ ଆଉ ଛୋଟୁଲାଲ୍‌ଙ୍କ ପାଖକୁ ଆସିଲେ ନାହିଁ । ଛୋଟୁଲାଲ୍ କ୍ରମେ ଗରୀବ ହୋଇଗଲେ । ନନ୍ଦିନୀଙ୍କୁ ଅଳଙ୍କାର ଓ ଭଲ ଭଲ ଶାଢ଼ୀମାନ କିଣିଦେବାଭଳି ସମ୍ବଳ ଆଉ ତାଙ୍କର ରହିଲା ନାହିଁ । ନନ୍ଦିନୀ ଏଥିରେ ବଡ କ୍ଷୁଣ୍ଣ ହେଲେ । ସେ ସର୍ବଦା ଛୋଟୁଲାଲ୍‌ଙ୍କୁ ଦୋଷଦେବାକୁ ଲାଗିଲେ ।

ସମୟଆସିଲା ଯେତେବେଳେ ଛୋଟୁଲାଲ୍‌ଙ୍କର ଗୋଟାଏ ପଇସା ବି ଆୟ ହେଲା ନାହିଁ । ସେ ସକାଳେ ଘରୁ ବାହାରି ଆସି ତାଙ୍କ ଚିକିତ୍ସାଳୟରେ ସାରାଦିନ ବସି ରହିଲେ କିନ୍ତୁ ଜଣେ ବି ରୋଗୀ ଆସିଲେ ନାହିଁ ।

"ନନ୍ଦିନୀ ତାଙ୍କୁ ବହୁତ କର୍କଶ କଥା କହିଲେ ।" ହଁ ମୁଁ କି ଅପରାଧ କରିଥିଲି ଯେ ଏଭଳି ଅପଦାର୍ଥ ସ୍ୱାମୀଟିଏ ମୋ କପାଳରେ ଜୁଟିଲା ? ଯେଉଁ ମୁଠିଏ ଅଟା, ଡାଲି ଥିଲା ସେତକ କାଲି ରାତିରେ ସରିଛି । ଆଜି ଘରେ କଣାଏ ଖାଇବା ଜିନିଷ ନାହିଁ । ଭିକ ମାଗିବା ଛଡ଼ା ଆମର ଆଉ ଉପାୟ କ'ଣ ?" ଏତକ କହି ନନ୍ଦିନୀ କାନ୍ଦିଲେ ।

ଲଜ୍ଜାରେ ଛୋଟୁଲାଲ୍ ମାଟିରେ ମିଶିଯିବାକୁ ଲାଗିଲେ । ଯାହାହେଉ, ସେ ସ୍ତ୍ରୀକୁ ବୁଝାଇ କହିଲେ, "ନନ୍ଦିନୀ ! ତୁମ ମୁହଁରେ ହସ ଦେଖିବା ପାଇଁ ମୋତେ ଯଦି ଭିକମାଗିବାକୁ ପଡେ, ସେଥିରେ ମୋର କିଛି ଆପତ୍ତି ନାହିଁ । କିନ୍ତୁ କେଉଁଠିକୁ ମାଗିବାକୁ ଯିବି ?"

ନନ୍ଦିନୀ ଆଖି ପୋଛି କହିଲେ, "ରାଜାଙ୍କ ପାଖକୁ ଯାଅ । ତାଙ୍କୁ ଯାହା ଇଚ୍ଛା ମାଗିପାର । ସେ ଯଦି ଭଲ ମନରେ ଥିବେ, ତାହାହିଁ ଦେଇଦେବେ ।"

ଛୋଟୁଲାଲ୍ ରାଜନବର ଅଭିମୁଖେ ଚାଲିଲେ । ନବର ଆଗରେ ପ୍ରହରୀମାନେ ଛିଡ଼ା ହୋଇଥିଲେ । ସେମାନଙ୍କ ହାତରେ ଶାଣିତ ତରବାରୀ, ଦେହରେ ଚକ୍ ଚକ୍ ପୋଷାକ । ଛୋଟୁଲାଲ୍ ସେମାନଙ୍କୁ ଖାତିରି ନକରି ସିଧାସଳଖ ଦରବାର ଭିତରକୁ ପଶିଥିଲେ । ସେଠାରେ ରତ୍ନଖଚିତ ସିଂହାସନରେ ପାତ୍ର ମନ୍ତ୍ରୀ ଗହଣରେ ରାଜା ବସିଥିଲେ । ଛୋଟୁଲାଲ୍ ରାଜାଙ୍କୁ ତିନିଥର ଅଭିବାଦନ କରି ବହୁତ ସାହସ ସଞ୍ଚୟ କରି କହିଲେ, "ମହାରାଜ ! ମୋତେ ଯାହା ଇଚ୍ଛା ଦାନ କରନ୍ତୁ ।"

ରାଜା ମଉଜିଆ ଭାବରେ ହସି ପଚାରିଲେ, "ତୁମକୁ ଠିକ୍ କ'ଣ ଦେବି ?"

ଛୋଟୁଲାଲ୍‌ର ବୁଦ୍ଧି ବଣା ହୋଇଗଲା । ନନ୍ଦିନୀତ "ଯାହାଇଚ୍ଛା" ମାଗିବାକୁ କହିଥିଲା । ଆଉ କିଛିନୁହେଁ । ତେଣୁ ଛୋଟୁଲାଲ୍ ଢେପ ଢୋକି ପୁଣି କହିଲା, "ଯାହା ଇଚ୍ଛା ହଜୁର୍ !"

ରଜା ମନ୍ତ୍ରୀଙ୍କୁ ଅନାଇ କହିଲେ, "ଏହାଙ୍କୁ ଏଭଳି ଖଣ୍ଡିଏ ଜମି ଦିଅ, ଯାହାକୁ ଆଉ କେହି ନେବାକୁ ପ୍ରସ୍ତୁତ ନୁହନ୍ତି ।"

ଛୋଟୁଲାଲ୍ ଆନନ୍ଦରେ ଘରକୁ ବାହୁଡ଼ି ଆଇଲେ । ନନ୍ଦିନୀ ଆଗରେ ଯାଇ ହସି ହସି କହିଲେ, "ରଜା ବାସ୍ତବିକ ବଡ଼ ଦୟାଳୁ । ସେ ମୋତେ ଏପରି ଜମି ଦେଇଛନ୍ତି ଯାହାକୁ ଆଉ କେହି ନେବାକୁ ପ୍ରସ୍ତୁତ ନୁହନ୍ତି !"

ନନ୍ଦିନୀ ହତାଶାରେ ଭାଙ୍ଗି ପଡ଼ିଲେ । କିନ୍ତୁ ବର୍ତ୍ତମାନ ଆଉ କିଛି ଉପାୟ ନଥିଲା । ଟିକିଏ ଆଶ୍ୱସ୍ତ ହେବାପରେ ସେ ଛୋଟୁଲାଲ୍‌କୁ ଡାକିଲେ ଓ ଉଭୟେ ତାଙ୍କୁ ମିଳିଥିବା ଜମି ଦେଖିବାକୁ ବାହାରିଲେ । ଜମି ଖଣ୍ଡିକ ଖୁବ୍ ବଡ଼ । କିନ୍ତୁ କଣ୍ଟାବୁଦା ଓ ବଡ଼ ବଡ଼ ପଥରଖଣ୍ଡରେ ଭର୍ତ୍ତି ।

ନନ୍ଦିନୀ ମୁଣ୍ଡରେ ହାତଦେଇ ବସିଲେ । ଏ ଜମିକୁ ସଫାକରି ସେମାନେ କିପରି ଚାଷ କରିବେ ? କିନ୍ତୁ ନନ୍ଦିନୀ କୌଣସି ବିଷୟରେ ହଟିବାର ସ୍ତ୍ରୀ ନୁହନ୍ତି । ସେ ତାଙ୍କ ସ୍ୱାମୀଙ୍କୁ କହିଲେ, "କିଛି ପ୍ରଶ୍ନ କରନାହିଁ । ମୁଁ ଯେପରି କରୁଛି ସେହିପରି କର ।" ନନ୍ଦିନୀ ନଇଁପଡ଼ି ଜମି ଖଣ୍ଡିକୁ ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ପରୀକ୍ଷା କରିବାକୁ ଲାଗିଲେ । ତାଙ୍କ ସ୍ୱାମୀ ମଧ୍ୟ ତାହହିଁ କଲେ ।

ଦଳେ ଦସ୍ୟୁ ଘୋଡା ଚଢି ସେ ରାସ୍ତାରେ ଯାଉଥିଲେ । ଛୋଟୁଲାଲ୍ ଓ ତାଙ୍କ ସ୍ତ୍ରୀ ଖୁବ୍ ମନଯୋଗ ସହକାରେ କ'ଣ ଖୋଜୁଥିବାର ଦେଖି ଦସ୍ୟୁ ସର୍ଦ୍ଦାର ଘୋଡାରୁ ଓହ୍ଲାଇ ପଡ଼ି ସେମାନଙ୍କୁ ପଚାରିଲା, "କ'ଣ ଖୋଜି ଲାଗିଛ ? କିଛି ହଜାଇ ଦେଇଛ କି ?"

ନନ୍ଦିନୀ ଚମକି ପଡ଼ିବାର ଅଭିନୟ କଲେ ଓ କହିଲେ, "ନା, ନା, ଆମେ କିଛି ହଜାଇ ନାହୁଁ ।" ତରତରରେ ଏକଥା କହି ସେ ଦସ୍ୟୁ ସର୍ଦ୍ଦାରକୁ ଜମି ବାହାରକୁ ନେଇ ଯିବାକୁ ଚେଷ୍ଟା କଲେ ।

ଦସ୍ୟୁ-ସର୍ଦ୍ଦାର ମନରେ ଘୋର ସନ୍ଦେହ ହେଲା । ନନ୍ଦିନୀ କ'ଣ ଖୋଜୁଥିଲେ, ତାହା ଜାଣିବାକୁ ସେ ଜିଦ୍ କରି ବସିଲା । ସେ ନନ୍ଦିନୀଙ୍କୁ ନାନା ଭାବରେ ଜେରା କରିବାକୁ ଲାଗିଲା । ଶେଷକୁ ନନ୍ଦିନୀ ତାଙ୍କୁ ଟିକିଏ ଦୂରକୁ ଡାକି ନେଇ ଚୁପ୍ ଚୁପ୍ କହିଲେ, "ମୁଁ ତୁମକୁ ଗୋପନରେ ଯାହା କହୁଛି, ତୁମେ କାହାକୁ କହିବ ନାହିଁ ବୋଲି ଶପଥ କର । କଥାହେଲା, ମୋ ଜେଜେବାପା ଗଲାକାଲି ମରିଗଲେ । ଠିକ୍ ମରିବା ପୂର୍ବରୁ ସେ ମୋତେ କହିଗଲେ ଯେ ତିନିଟା ସିନ୍ଦୁକରେ ସୁନାମୋହର ପୂରାଇ ଏଇ ଜମି ଭିତରେ କେଉଁଠି ପୋତି ରଖିଛନ୍ତି । ଆମେ ସେ ସିନ୍ଦୁକ ଗୁଡ଼ିକ କେଉଁଠାରେ ପୋତା ହୋଇଥିବ, ତାହା ଅନ୍ଦାଜ କରିବାକୁ ଚେଷ୍ଟା କରୁଛୁଁ । କିନ୍ତୁ ଏକଥା କାହାକୁ କହିବ ନାହିଁ ଟି !"

ଦସ୍ୟୁ-ସର୍ଦ୍ଦାର ଏକଥା କାହାକୁ କହିବ ନାହିଁ ବୋଲି ଶପଥ କରି ଚାଲିଗଲା । ତା'ପରେ ଛୋଟୁଲାଲ୍ ଓ ନନ୍ଦିନୀ ମଧ୍ୟ ଘରକୁ ଫେରିଗଲେ । ଯିବା ବାଟରେ ନନ୍ଦିନୀ ଆନନ୍ଦରେ ଗୀତ ବୋଲି ନାଚିବାକୁ ଲାଗିଲେ । ହଠାତ୍ ନନ୍ଦିନୀଙ୍କର କାହିଁକି ଏଭଳି ଭାବାନ୍ତର ହେଲା, ସେକଥା ଛୋଟୁଲାଲ ବୁଝି ପାରିଲେ ନାହିଁ ।

ପରଦିନ ଛୋଟୁଲାଲ୍ ଓ ନନ୍ଦିନୀ ତାଙ୍କ ଜମି ଦେଖିବାକୁ ଗଲେ । ଜମିକୁ ଦେଖି ଚିହ୍ନିବାର ଉପାୟ ନଥିଲା । ସାରା ଜମିକୁ ଖୋଳା ଖୋଳି କରି କଣ୍ଟାବୁଦାମାନ ଉପାଡ଼ି ଦିଆହୋଇଥିଲା ଓ ପଥର ଖଣ୍ଡମାନ ଘୁଞ୍ଚାଇ ଦିଆଯାଇଥିଲା । ନନ୍ଦିନୀ ଉଲ୍ଲାସରେ ହାତ ତାଳି ଦେଲେ । ସେ କହିଲେ, ସୁନା ମୋହର ଭର୍ତ୍ତି ସିନ୍ଦୁକ କଥା କହି ମୁଁ ସେମାନଙ୍କୁ ବୋକା ବନାଇଛି । କଠୋର ପରିଶ୍ରମ କରି ଆମକୁ ଯାହା କରିବାକୁ ପଡ଼ିଥାନ୍ତା, ସେମାନେ ସୁନା ସିନ୍ଦୁକ ଖୋଜି ଆମ ପାଇଁ ତାହା କରି ଦେଇଚନ୍ତି । ବର୍ତ୍ତମାନ ଖାଲି ବିହନ ବୁଣିଲେ ହେଲା ।"

ନନ୍ଦିନୀ ମହାଜନ ପାଖରୁ କିଛି ଟଙ୍କା କରଜ ଆଣି ବିହନ କିଣି ସେ ଜମିରେ ବୁଣିଲେ । ଦୁହେଁ ମିଶି ଜମିରେ ଉତ୍ତମ ରୂପେ ସାର ଓ ପାଣି ଦେଲେ । ଯଥା ସମୟରେ ଜମିରେ ପ୍ରଚୁର ଫସଲ ହେଲା । ସେମାନଙ୍କର ଅଭାବ ଦୂର ହେଲା । ସେମାନେ ନୂଆ ଘରଟିଏ ମଧ୍ୟ ତୋଳିଲେ । ନୂଆ ଶାଢ଼ୀ, ଅଳଙ୍କାର ପିନ୍ଧି ନନ୍ଦିନୀ ସର୍ବଦା ହସ ହସ ବଦନରେ ଘରକାମ ଦେଖାଶୁଣା କରିବାକୁ ଲାଗିଲେ ।

କିନ୍ତୁ ସେ ଦସ୍ୟୁ ସର୍ଦ୍ଦାର ଯେତେବେଳେ ବୁଝିପାରିଲା ଯେ ସେ ପ୍ରତାରିତ ହୋଇଛି, ସେତେବେଳେ ସେ ପ୍ରତିଶୋଧ ନେବାକୁ ଠିକ୍‌କଲା ।

ଦିନେ ରାତିରେ ନନ୍ଦିନୀ ଓ ଛୋଟୁଲାଲ୍ ଶୋଇବାକୁ ଯାଉଛନ୍ତି, ଦସ୍ୟୁ-ସର୍ଦ୍ଦାର ଲୁଚି ଲୁଚି ଘର ଭିତରକୁ ଆସି ପର୍ଦ୍ଦା ଆଢ଼ୁଆଳରେ ଛପି ରହିଲା । ବିପରୀତ ପାଖ କାନ୍ଥରେ ତା'ର ଛାଇ ଦେଖି ନନ୍ଦିନୀ ତାକୁ ଚିହ୍ନି ପାରିଲା । ସେ ଗୋଟାଏ କଳସିରେ ଭଙ୍ଗା କାଚ ଓ କଣ୍ଟାମାନ ପୂରାଇ ଉପରେ କେତୋଟି ମିଠେଇ ରଖିଦେଲା । ତା'ପରେ ସେ ଛୋଟୁଲାଲ୍‌କୁ ଗୋପନରେ କିଛି ନିର୍ଦ୍ଦେଶ ଦେଇ ରଖିଲା ।

ଅଳ୍ପ ସମୟ ପରେ ଛୋଟୁଲାଲ ଉଚ୍ଚ କଣ୍ଠରେ ପଚାରିଲେ, "ଟଙ୍କା ପଇସାତକ ତୁମେ କେଉଁଠି ରଖିଲ ? ନିରାପଦରେ ରଖିଛ ତ ?"

ନନ୍ଦିନୀ ଉତ୍ତର ଦେଲେ, "ସେ ପାଇଁ ତୁମେ ବ୍ୟସ୍ତ ହେବା ଦରକାର ନାହିଁ । ତୁମେତ ଜାଣ, ମୋର ଯଥେଷ୍ଟ ବୁଦ୍ଧି ଅଛି । ଟଙ୍କା ପଇସା ମୁଁ ନିରାପଦରେ ରଖିଛି । ଗୋଟାଏ କଳସରେ ସେସବୁ ପୂରେଇ କେଇଟା ମିଠେଇ ରଖିଦେଇଛି । ସେଥିରେ ଟଙ୍କା ଅଛି ବୋଲି କେହି ବୁଝି ପାରିବେ ନାହିଁ ।" ତା'ପରେ ନନ୍ଦିନୀ ଦୀପଟି ଲିଭାଇ ଦେଇ ଶୋଇ ପଡ଼ିଲା ।

ଦସ୍ୟୁ-ସର୍ଦ୍ଦାର ପର୍ଦ୍ଦା ଆଢ଼ୁଆଳରେ ରହି ହସିଲା । ଏଥର ସେ ନନ୍ଦିନୀ ଉପରେ ଉପଯୁକ୍ତ ପ୍ରତିଶୋଧ ନେବ । ସେ ପ୍ରାୟ ଅଧଘଣ୍ଟାଏ କାଳ ଅପେକ୍ଷା କଲା । ଯେତେବେଳେ ତା'ର ମନେ ହେଲା ଯେ ଉଭୟ ଛୋଟୁଲାଲ୍ ଓ ନନ୍ଦିନୀ ନିଦରେ ଶୋଇଯାଇଛନ୍ତି, ସେ ଏଆଡ଼େ ସେଆଡ଼େ ଖୋଜି ରୋଷେଇଶାଳରେ ପଶିଲା ଓ ମିଠେଇଥିବା କଳସୀଟି ଧରି ଧୀରେ ଧୀରେ ବାହାରି ପଳାଇଗଲା ।

ସେ ତାପରେ ତା' ଦଳର ଲୋକଙ୍କ ଆଗରେ ଯାଇ କଳସୀଟି ଥୋଇଦେଇ ଗର୍ବ କରି କହିଲା, "ଛୋଟୁଲାଲ୍ ଓ ନନ୍ଦିନୀଙ୍କର ସବୁ ସଞ୍ଚୟ ଏଇ ମିଠେଇ କେଇଟି ତଳେ ରହିଛି ।" ଦସ୍ୟୁମାନେ ମିଠେଇତକ ଫୋପାଡ଼ିଦେଇ ଅଧୈର୍ଯ୍ୟ ହୋଇ କଳସୀ ଭିତରକୁ ହାତ ପୂରାଇ

ଦେଲେ । ଭଙ୍ଗା କାଚରେ ସେମାନଙ୍କ ହାତ କାଟି ହୋଇଗଲା । କଣ୍ଟାରେ ଫୋଡ଼ି ହୋଇ-ଗଲା । ରକ୍ତାକ୍ତ ହାତରେ, ରାଗରେ ଆଖି ଲାଲ୍ କରି ଦସ୍ୟୁମାନେ କିଛି ସମୟ ଚୁପ୍‌ଚାପ୍ ବସି ରହିଲେ । ମିଠେଇତକ ହେଲେ ଫୋପାଡ଼ି ନଦେଇ ରଖି ଥା'ନ୍ତେ ! ଯାହାହେଉ, ପ୍ରତିଶୋଧ ନେବା ପାଇଁ ସେମାନେ ପୁଣି ଥରେ ବଦ୍ଧପରିକର ହେଲେ ।

ସପ୍ତାହଟିଏ ବିତିଗଲା । ଦିନେ ସଞ୍ଜ ହୋଇ ଆସୁଛି । ବାରିଦୁଆର ପଟେ ହଠାତ୍ କିଏ ଧୀର କଣ୍ଠରେ କିଛି କହୁଥିବାର ନନ୍ଦିନୀ ଶୁଣି ପାରିଲେ । ସେ ଖୁବ୍ ଏକାଗ୍ର ହୋଇ କାନ ଡେରିଲେ । ଯିଏ କଥା କହୁଥିଲା, ତା'ର କଣ୍ଠସ୍ୱର ବାରିବାକୁ ବିଶେଷ ବିଳମ୍ବ ହେଲା ନାହିଁ । ସେ ତା' ଦଳର ଲୋକଙ୍କୁ ବୁଝାଇ ଦେଉଥିଲା, କିପରି ଝରକା ଦେଇ ସେମାନେ ଜଣ ଜଣ ହୋଇ ଶୋଇବା ଘର ଭିତରେ ପଶିବେ ଓ ଛୋଟୁଲାଲ୍ ଓ ନନ୍ଦିନୀଙ୍କୁ ବାନ୍ଧି ପକାଇ, ସବୁ ଜିନିଷ ପତ୍ର ଧରି ପଳାଇବେ । ଦସ୍ୟୁ-ସର୍ଦ୍ଦାର କହୁଥିଲା, "ନନ୍ଦିନୀକୁ ବାନ୍ଧିବା ପାଇଁ ମୁଁ ଖଣ୍ଡିଏ ଶକ୍ତ ଦଉଡ଼ି ଆଣିଛି । ସେଥିରେ ଥରେ ବନ୍ଧା ହେଲେ ସେ ଆଉ ସହଜରେ ଆମକୁ ଭୁଲିବ ନାହିଁ ।"

ନନ୍ଦିନୀ ସଙ୍ଗେ ସଙ୍ଗେ ରୋଷେଇଶାଳକୁ ଯାଇ ଖଣ୍ଡିଏ ଧାରୁଆ ଛୁରୀ ନେଇଆସିଲେ । ତା'ପରେ ସେ ଶୋଇବାଘର ଝରକା ତଳେ ଛିଡ଼ା ହୋଇ ରହିଲେ । କିଛି ସମୟ ପରେ କାନ୍ଥ ସେପଟେ ମାଡ଼ିଥିବା ଲତା ଭିତରେ ଖସ୍ ଖାସ୍ ଶବ୍ଦ ଶୁଭିଲା । ତା'ପରେ ଝରକା ବାହାର ପଟରୁ ଯିମିତି ମୁହଁଟାଏ ଭିତର ପଟକୁ ଦେଖାଦେଇଛି, ସେମିତି ବିଜୁଳି ବେଗରେ ନନ୍ଦିନୀ ଛୁରୀଟି ବୁଲାଇ ଆଣିଲେ । ଭିତରକୁ ପଶୁଥିବା ଲୋକଟିର ନାକଟି କଟିଗଲା । ମୁଣ୍ଡଟି ସଙ୍ଗେ ସଙ୍ଗେ ଅପସରିଗଲା । ଦସ୍ୟୁଟି ତଳକୁ ଡେଇଁ ପଡ଼ି ସର୍ଦ୍ଦାରକୁ ତା'ର ରକ୍ତାକ୍ତ ନାକ ଦେଖାଇଲା । ସର୍ଦ୍ଦାର କହିଲା ଯେ ଅନ୍ଧାରରେ ପଥରଟାଏ ଦେହରେ ପିଟି ହୋଇ ତା' ନାକର ସେଭଳି ଅବସ୍ଥା ହୋଇଛି ନିଶ୍ଚୟ । ତା' ଅନ୍ଦାଜର ସତ୍ୟତା ପ୍ରମାଣ କରିବା ପାଇଁ ସର୍ଦ୍ଦାର ନିଜେ ଏଥର ଝରକା ଦେଇ ପଶିବାକୁ ସ୍ଥିର କଲା । ଯିମିତି ତା' ମୁହଁ ଦେଖା ଦେଇଛି, ନନ୍ଦିନୀ ସିମିତି ଛୁରୀ ବୁଲାଇ ଆଣିଲେ । ସର୍ଦ୍ଦାର ନାକଟି ହରାଇଲା । ଯନ୍ତ୍ରଣାରେ ଛଟପଟ ହୋଇ

ସେ ଶପଥ କଲା ଯେ ନନ୍ଦିନୀ ଉପରେ ପ୍ରତିଶୋଧ ନ ନେବା ଯାଏ ସେ ଦାନାଟିଏ ବି ପାଟିରେ ପକାଇବ ନାହିଁ ।

ବସନ୍ତ ଯାଇ ଗ୍ରୀଷ୍ମ ଆସିଲା । ଦିନବେଳେ ଖୁବ୍ ଗରମ ପଡୁଥାଏ । କିନ୍ତୁ ସଞ୍ଜହେଲେ ମୃଦୁ ମୃଦୁ ଶୀତଳ ପବନ ବହୁଥାଏ । ଛୋଟୁଲାଲ୍ ଓ ନନ୍ଦିନୀ ଗରମ ଯୋଗୁଁ ବଗିଚାରେ ଶୋଇଲେ । ଜହ୍ନ ଆଲୁଅ ଓ ତାରାଙ୍କ ମେଳ ସେମାନଙ୍କୁ ଭାରି ଭଲ ଲାଗୁଥାଏ ।

ଦିନେ ରାତିରେ ନନ୍ଦିନୀ ସ୍ୱପ୍ନ ଦେଖିଲେ, ସେ ଗୋଟିଏ ଓଟ ଚଢ଼ି ଚାଲିଛନ୍ତି । ତାଙ୍କ ଆଗରେ ଆଉ ଗୋଟାଏ ଓଟ ଚଢ଼ି ଛୋଟୁଲାଲ୍ ଚାଲିଛନ୍ତି । ଦୂରରେ ଦେଖାଯାଉଥାଏ ଧାଡ଼ି ଧାଡ଼ି ତାଳଗଛ ଓ ସୁନ୍ଦର ଉଦ୍ୟାନଟିଏ । ଗୋଟାଏ ଧଳା ଘୋଡ଼ାରେ ଚଢ଼ି ତାଙ୍କ ଆଡ଼କୁ ଜଣେ ରାଜପୁତ୍ର ଆସିଲେ ଓ ଖଣ୍ଡିଏ ଶୁଭ୍ର-ସୁନେଲୀ ସାଢ଼ୀ ତଥା ଗୋଟାଏ ସୁବର୍ଣ୍ଣ ମୁକୁଟ ତାଙ୍କ ଆଡ଼କୁ ବଢ଼ାଇ ଦେଲେ । ନନ୍ଦିନୀ ସେସବୁ ଧରି ନେବାକୁ ଯାଉଛନ୍ତି, ଏତିକିବେଳେ ତାଙ୍କ ନିଦ ଭାଙ୍ଗିଗଲା ।

ସେ ତଳକୁ ଅନାଇ ଦେଖିଲେ ଯେ ଓଟ ନୁହେଁ, ଚାରିଜଣ ଦସ୍ୟୁ ତାଙ୍କୁ ଟେକି ନେଇ ଚାଲିଛନ୍ତି । ଆଗେ ଆଗେ ଅନ୍ୟ ଦସ୍ୟୁମାନେ ଚାଲିଛନ୍ତି ।

ନନ୍ଦିନୀ ଭାବିଲେ, "ହାୟ କପାଳ ! ଏତେ ଦିନକେ ଏମାନେ ପ୍ରତିଶୋଧ ନେବାର ସୁଯୋଗ ପାଇଛନ୍ତି । ଏମାନେ ମୋତେ କୁଆଡ଼େ ନେବେ, ଏମାନଙ୍କର ଉଦ୍ଦେଶ୍ୟ କ'ଣ, ଭଗବାନ ଏକା ଜାଣନ୍ତି । ଏମାନଙ୍କଠାରୁ ଦୟାମାୟା ଆଶା କରିବା ବୃଥା ।"

ଏତିକିବେଳେ ଜଣେ ଦସ୍ୟୁ କହିଲା, "ଏ ସ୍ତ୍ରୀଲୋକଟି ବହୁତ ଓଜନ । ମୋ କାନ୍ଧ ଦରଜ ହୋଇଗଲାଣି । ଟିକିଏ ବିଶ୍ରାମ କରିବା ଚାଲ । ବରଂ ଟିକିଏ ଶୋଇ ପଡ଼ିବା । ତା ପରେ ପୁଣି ଚାଲିବା ।" ଏ ପ୍ରସ୍ତାବରେ ସମସ୍ତେ ରାଜି ହେଲେ । ଗୋଟିଏ ବରଗଛ ମୂଳକୁ ଆସି ନନ୍ଦିନୀକୁ ତା ଶେଯସହ ତଳେ ଥୋଇ ଦେଇ ସେମାନେ ଗଛକୁ ଆଉଜି ଆଖି ବୁଜିଲେ ।

ଗଛଟିର ଘଞ୍ଚ ଡାଳପତ୍ର ଗହନରୁ ନନ୍ଦିନୀ ତଳକୁ ଅନାଇ ଦସ୍ୟୁମାନଙ୍କୁ ଭଲ ଭାବରେ ...

ନନ୍ଦିନୀ ଧୀରେ ଧୀରେ ଉଠି ତାଙ୍କ ଶେଯଟିକୁ ଏପରି ଭାବରେ ସଜାଇଦେଲେ ଯେ ଦେଖିଲେ ମନେହେବ ଯେପରି ମଣିଷଟାଏ ଶୋଇଛି । ତା'ପରେ ସେ ଗଛ ଉପରକୁ ଉଠିଗଲେ ।

ଗଛଟିର ଘଞ୍ଚ ଡାଳପତ୍ର ଗହନରୁ ନନ୍ଦିନୀ ତଳକୁ ଅନାଇ ଦସ୍ୟୁମାନଙ୍କୁ ଭଲ ଭାବରେ

ଦେଖିଲେ । ହଠାତ୍ ତାଙ୍କ ମୁଣ୍ଡକୁ ଗୋଟାଏ କୌଶଳ ଆସିଗଲା । ସେ ତାଙ୍କ କଳା ଚଦରରେ ମୁହଁଟି ଘୋଡ଼ାଇ ତାଙ୍କ ଧଳା ଶାଢ଼ୀକୁ ଦୁଇ ହାତରେ ଡେଣା ଭଳି ଟାଣି ଧରିଲେ । ତା'ପରେ ବିକଟ ଚିତ୍କାର କରି ସେଇ କୃତ୍ରିମ ଡେଣା ଫଡ଼ ଫଡ଼ କରିବାକୁ ଲାଗିଲେ ।

ଦସ୍ୟୁମାନେ ଚମକି ଉଠି ଇତସ୍ତତଃ ଅନାଇଲେ । ନନ୍ଦିନୀଙ୍କ ବିକଟ ଚିତ୍କାରରେ ଗୋଟାଏ ଭୌତିକ ପରିବେଶ ସୃଷ୍ଟି ହେଲା । ଦସ୍ୟୁମାନେ ଉପରକୁ ଅନାଇଲେ । ସେମାନେ ଦେଖିଲେ କଳା ମୁହାଁ ଅଦ୍ଭୁତ ଜୀବଟିଏ ଧଳା ଡେଣା ପିଟି ପିଟି ସେମାନଙ୍କ ଆଡ଼କୁ ଚାହିଁଛି । ସେମାନେ କହିଲେ, "ଇଏ ନିଶ୍ଚୟ ଏ ଗଛରେ ରହୁଥିବା ଭୂତ । ଆମେ ଗୋଳମାଳ କଲୁ ବୋଲି ଆମ ଉପରେ ଖପା ହୋଇଛି ।" ସେମାନେ ଥରେ ବି ପଛକୁ ଫେରି ନ ଚାହିଁ ପ୍ରାଣମୂର୍ଚ୍ଛା ଦୌଡ଼ିବାକୁ ଲାଗିଲେ ।

ନନ୍ଦିନୀ କୌଣସି ପ୍ରକାରେ ହସ ଚାପି ରଖିଲେ । ଗଛରୁ ଓହ୍ଲାଇ, ଜିନିଷ ପତ୍ର ଧରି ସେ ଆନନ୍ଦରେ ଘରକୁ ଫେରିଗଲେ । ତାଙ୍କର ହୃଦ୍‌ବୋଧ ହେଲା ଯେ ଆଉ କେବେ ଦସ୍ୟୁମାନେ ତାଙ୍କ ସହିତ ଲାଗିବେ ନାହିଁ ।



Printed at Gita Offset Printers Pvt. Ltd., New Delhi-20

